# INDUMATEE

BY

GANGADHAR MEHER




---

ଶ୍ରୀ ଗଙ୍ଗାଧର ମେହେରଙ୍କ ଦ୍ୱାରା
ପ୍ରଣୀତ

ଓ

ଶ୍ରୀ ଭଗବାନ ମେହେରଙ୍କ ଦ୍ୱାରା
ପ୍ରକାଶିତ

---

ନୂତନ ସଂସ୍କରଣ
୧୯୪୦

*Price—6 Annas* ମୂଲ୍ୟ—ଛ'ଅଣା ମାତ୍ର

# ଉତ୍ସର୍ଗ

ବନ୍ଧୁହୃତ୍କୁମୁଦବନତୋଷଣୀ-ପ୍ରଭାପ୍ରଦାୟକ ଉତ୍କଳାକାଶ-
ସୌନ୍ଦର୍ଯ୍ୟସମ୍ପାଦକ ପର୍ବଶର୍ବରୀନାୟକ ଶ୍ରୀଲ
ଶ୍ରୀଯୁକ୍ତ ରାମଚନ୍ଦ୍ର ଭଞ୍ଜ ଦେବ ମହାରାଜ
ବାହାଦୂର ମୟୂରଭଞ୍ଜାଧୀଶ୍ୱର
ମହାମହିମେଷୁ

ସବିନୟ ନିବେଦନମିଦଂ

ମହାରାଜ,

ବରପାଲି ଯୁବରାଜଙ୍କ ବିବାହ ସମୟରେ ବାରିପଦା ରାଜଧାନୀର ଉପକଣ୍ଠବର୍ତ୍ତୀ ମଧୁବନୋଦ୍ୟାନରେ ଶ୍ରୀଛାମୁଙ୍କର ମୁଖାରବିନ୍ଦ ଦର୍ଶନ କଲି ମାତ୍ରେ ମୋହର ହୃଦୟରେ ଏକ ଅନିର୍ବଚନୀୟ ଭାବ ଉଦିତ ହେଲା। ପରେ ରାଜନୀତିପରାୟଣତା, ପ୍ରଜାରଞ୍ଜକତା ପ୍ରଭୃତି ରାଜୋଚିତ ସମସ୍ତ ଲକ୍ଷଣ ଓ ଉଦାରହୃଦୟତା, ନିରହଂକାରିତା, ସୁଶୀଳତାଦି ଦେବୋପମ ବହୁବିଧ ସଦ୍‌ଗୁଣର ଭୂରି ଭୂରି ପ୍ରତ୍ୟକ୍ଷପ୍ରମାଣ ସନ୍ଦର୍ଶନ କରିବାରୁ ଅନୁପମ ଭକ୍ତିର ସଞ୍ଚାର ହେଲା । ଶ୍ରୀଛାମୁଙ୍କର ଚରଣୋଭଜନ କରି ସେହି ଭକ୍ତି ଚରିତାର୍ଥ କରିବାକୁ ଉତ୍ସୁକ ଥାଇ ଅଛ ସୁଦ୍ଧା କୌଣସି ସୁଯୋଗ ପାଇ ପାରି ନ ଥିଲି । ସଂପ୍ରତି ନିଃସ୍ୱ ଭକ୍ତର ସାମାନ୍ୟ ଦୂର୍ବା କୃପାମୟ ପ୍ରଭୁର ଅବଜ୍ଞେୟ ହୁଏ ନାହିଁ ଭାବି ମୋହର ନବୋଦ୍ୟମପ୍ରସୂତ ଏହି କ୍ଷୁଦ୍ର କାବ୍ୟଖଣ୍ଡି ଶ୍ରୀ ମହାରାଜଙ୍କ କର-କମଳରେ ଅର୍ପଣ କଲି । ଇତି ।

୨୧ । ୮ । ୯୪
ବରପାଲି,
। ଡା । ସମ୍ବଲପୁର

କୃପାକାଙ୍କ୍ଷୀ
ଶ୍ରୀ ଗଙ୍ଗାଧର ମେହେର

ଦ୍ୱିତୀୟ ସଂସ୍କରଣ

## ବିଜ୍ଞାପନ



'ଇନ୍ଦୁମତୀ' ଦ୍ୱିତୀୟ ବାର ପ୍ରକାଶିତ ହେଲା । ଏଥର କେତେକ ଶବ୍ଦ ସଂଶୋଧିତ, କେତେକ ପଦ୍ୟ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହୋଇଅଛି । ଆଶା ହୁଏ, ତହିଁ ନିମନ୍ତେ ସହୃଦୟ ପାଠକବର୍ଗଙ୍କ ଶୁଭ ଦୃଷ୍ଟି ହ୍ରାସ ହେବ ନାହିଁ । ଇତି ।

ପ୍ରକାଶକ
ଶ୍ରୀ ଭଗବାନ ମେହେର

କବିବର

ରାୟ ରାଧାନାଥ ରାୟବାହାଦୂରଙ୍କ

# ମନ୍ତବ୍ୟ

## ( ୧ )

'ଇନ୍ଦୁମତୀ' କାବ୍ୟ ମୁଁ ଆଦ୍ୟପ୍ରାନ୍ତ ପାଠ କରି ଅଶାତୀତ ପ୍ରୀତି ଲାଭ କରିଅଛି । ଏ କାବ୍ୟର କବି ସାମାନ୍ୟ ଶକ୍ତିଶାଳୀ ଲେଖକ ନୁହନ୍ତି । ମୂଳ ଚରିତ ରଘୁବଂଶରୁ ସଂଗୃହୀତ ହୋଇଥିଲେ ହେଁ ଏହାର ଭାବ ଏବଂ ଭାଷା ଦୃଷ୍ଟିରେ ମୁଁ ଏହାକୁ ଅଭିନବ ଏବଂ ଉତ୍କୃଷ୍ଟ କାବ୍ୟ-ରୂପେ ଗ୍ରହଣ କରିବାକୁ ଲେଶମାତ୍ର କୁଣ୍ଠିତ ହେବି ନାହିଁ । ଗ୍ରନ୍ଥକାର ଏଥିରେ ଅନେକ ନୂତନ ଏବଂ ସୁନ୍ଦର ଭାବ ସନ୍ନିବେଶିତ କରିଅଛନ୍ତି । ଏହାର ଭାଷା ସରଳ, ଅକ୍ଳିଷ୍ଟ ଏବଂ ଶ୍ରୁତିମଧୁର ହୋଇଅଛି । ମୋହ ମତରେ 'ଇନ୍ଦୁମତୀ' ସ୍ୱଭାବସୁନ୍ଦରୀ ଉତ୍କଳଭାରତୀଙ୍କର ଅନୁପଯୁକ୍ତ ଭୂଷଣ ନୁହେ ।

କଟକ
୨୨ । ୨ ।୧୪ } ଶ୍ରୀ ରାଧାନାଥ ରାୟ

# ମନ୍ତବ୍ୟ

( ୨ )

'ଇନ୍ଦୁମତୀ' ର ପାଣ୍ଡୁଲେଖ୍ୟ ଅବସ୍ଥାରେ ମୁଁ ତାହା ଆଦ୍ୟୋପାନ୍ତ ପାଠ କରି ଗ୍ରନ୍ଥକାର ମହାଶୟଙ୍କୁ ମୋହର ମତ ଜଣାଇଥିଲି । ଗ୍ରନ୍ଥକାର ସେହି ମତ ପୁସ୍ତକର ମୁଖବନ୍ଧରେ ସଂଯୋଜିତ କରିଅଛନ୍ତି ।

ପୁସ୍ତକର ଉତ୍କର୍ଷ ସମ୍ବନ୍ଧରେ ମୋହର ଅଧିକ କହିବାର ଅନାବଶ୍ୟକ । ମୁଁ ଆଶା କରେ, ଉତ୍କଳର ସାହିତ୍ୟରସିକମାନେ କାବ୍ୟ ଖଣ୍ଡିକ ସମଗ୍ର ପାଠ କରି ନିଜ ନିଜ ମତ ସ୍ଥିର କରିବେ । ଉତ୍କଳୀୟ ପାଠକଙ୍କର ତ କଥା ନାହିଁ, ଯେମାନେ ସଂସ୍କୃତ ରଘୁବଂଶରେ ଇନ୍ଦୁମତୀର ଚରିତ ପାଠ କରିଅଛନ୍ତି, ସେମାନେ ପୁଣି ଏହି କାବ୍ୟ ପାଠ କରି ପଠନଶ୍ରମକୁ ପଣ୍ଡଶ୍ରମ ମଣିବେ ନାହିଁ ।

ଗ୍ରନ୍ଥକାର ଉଚଶିକ୍ଷାର ସୁବିଧା ପାଇ ନ ଥିଲେ ; ମାତ୍ର ତାହାଙ୍କର ନୈସର୍ଗିକ ପ୍ରତିଭା ସେହି ଅଭାବ ପୂରଣ କରିଦେଇଅଛି । ସେହି ପ୍ରତିଭାବଳରେ ସେ ପ୍ରକୃତିର ସୌନ୍ଦର୍ଯ୍ୟ ପରୋକ୍ଷ ଭାବରେ ପୁସ୍ତକରେ ନ ଦେଖି ସେଥିର ସ୍ୱରୂପ ପ୍ରତ୍ୟକ୍ଷ କରିଅଛନ୍ତି ଏବଂ ଯାହା ଦେଖିଛନ୍ତି, ତାହା ଯଥାଯଥ ବର୍ଣ୍ଣନା କରିଅଛନ୍ତି । ୪୨ ପୃଷ୍ଠାରେ ଉଦ୍ୟାନବର୍ଣ୍ଣନା ମୋହର ଏହି କଥାର ଏକତର ପ୍ରମାଣରୂପେ ଗୃହୀତ ହୋଇ ପାରେ ।

'ଇନ୍ଦୁମତୀ'ର ଆଉ ଗୋଟିଏ ପ୍ରଧାନ ଗୁଣ ଏହି ଯେ, ଏଥିରେ ଏପରି କୌଣସି ଭାବ ବା ଶବ୍ଦ ନାହିଁ, ଯାହା ଆଧୁନିକ ରୁଚି ଅନୁସାରେ ବର୍ଜନୀୟ ବୋଲି ବିବେଚିତ ହେବ । ମୋହ ମତରେ ଏହା ଉଚ୍ଚ ବିଦ୍ୟାଳୟମାନଙ୍କରେ ପାଠ୍ୟପୁସ୍ତକରୂପେ ପ୍ରବର୍ତ୍ତିତ ହେବାର ସମ୍ପୂର୍ଣ୍ଣ ଉପଯୁକ୍ତ ଅଟେ ।

ପୁସ୍ତକର ସ୍ଥାନେ ସ୍ଥାନେ ଯେଉଁ ଦୋଷ ଅଛି, ଗୁଣ ସହିତ ତୁଳିତ ହେଲେ ତାହା ନିତାନ୍ତ ସାମାନ୍ୟ ଅଟେ । ଇତି ।

୭ । ୧୨ । ୯୪ ।     ଶ୍ରୀ ରାଧାନାଥ ରାୟ

## 'ଇନ୍ଦୁମତୀ' କାବ୍ୟପ୍ରଣେତା
## ଶ୍ରୀ ଗଙ୍ଗାଧର ମେହେରଙ୍କ ପ୍ରତି *



"But knowledge to their eyes her ample page
"Rich with the spoils of time did ne'er unroll.
"Chill penury repress'd their noble rage
"And froze the genial current of the Soul."

ଅହେ ଭ୍ରାତଃ, ତୁମ୍ଭଙ୍କୁ ମୁଁ କେବେ ଦେଖି ନାହିଁ,
ତବ କଥା ମନେ ମୋର ପଡ଼ଇ କିପାଇଁ ?
ଚିହ୍ନ କି ନ ଚିହ୍ନ ମୋତେ ତୁମ୍ଭେ, ଜାଣେ ନାହିଁ;
ତୁମ୍ଭଙ୍କୁ ମଣଇ କିନ୍ତୁ ମୁହିଁ ନିଜ ଭାଇ ।
କେବେହେଁ ନାହିଁ ଦେଖିବାକୁ ମୁଁ ତୁମ୍ଭ ମୂରତି,
ଦେଖି କାଳେ ତୁଟିଯିବ ମାୟା ତବ ପ୍ରତି ।
ପଢ଼ିଅଛି 'ଇନ୍ଦୁମତୀ' କାବ୍ୟ କେତେ ଥର,
ସେହିଠାରେ ପରିଚୟ ତୁମ୍ଭର ମୋହର ।
ଲାବଣ୍ୟ-କାସାର-ହଂସ, ପ୍ରକୃଷ୍ଟ ଅଦ୍ଭୁତ,
କାଳିଦାସ ଭାରତୀର ବାଣୀ-ବରସୁତ,
ଯୋଗ୍ୟ ଅନ୍ତେବାସୀ ତୁମ୍ଭେ ଅଟ ତାହାଙ୍କର,
ବଳିହାରି, ଗୁରୁ ପ୍ରତି ସମ୍ଭାର ଅର୍ଘ୍ୟର ।
ପବିତ୍ର ପ୍ରଣୟ ଏ ମୋ ଭାରତୀ-ନନ୍ଦନ,
ମହାର୍ଘ ଭୂଷଣ ପ୍ରାୟ କର ହେ ଗ୍ରହଣ ।
ସଂସାର ଅବଳ ସ୍ତୁତି ହାଟେ ଘାଟେ ମିଳେ,
ଏ ମୋହର ସ୍ନେହେ ନାହିଁ ସ୍ୱାର୍ଥଲବ ତିଳେ ।

---

* ଲେଖକ-ଉତ୍କଳର ସୁପ୍ରସିଦ୍ଧ କବି ଶ୍ରୀଯୁକ୍ତ ନନ୍ଦକିଶୋର ବଳ, ବି.ଏ., ବି.ଟି.

ଖଣ୍ଡେ କାବ୍ୟ ଲେଖି ଦେଇ ରହିଲ ନିଶ୍ଚିନ୍ତ,
ଐଶୀ ଶକ୍ତି ନାହିଁ କର୍ମେ ହେଲା କି ଉଚିତ ?

ଶୁଣିଅଛ ଦରିଦ୍ରତା କଠୋର କଶାଘାତ,
ସହୁ କଷ୍ଟେ କବି, ତୁମ୍ଭେ କର ଊନପାତ ।

ସ୍ମୃତିରେ ତୁମ୍ଭର ପରି ମୂର୍ଖ ଆଉ ଜଣେ,
ଦାରୁଣ ଦୁଃଖପ୍ରହାରେ ବଞ୍ଚେ ଜନ୍ତୁ ମନେ ।

ଅଛି କବିବାଣୀ, "ଦୁଃଖୀ ପାଇ ଦୁଃଖୀ ଜନ
ଯେଉଁ ସୁଖ ପାଏ, ନ ପାଏ ତା ସୁଖୀ ଜନ ।"

ତେଣୁ ମୋର ତୁମ୍ଭ ପ୍ରତି ଏ ସହାନୁଭୂତି,
ନାଚଇ ମୋ ନେତ୍ରେ "ଇନ୍ଦୁମତୀ" କବିମୂର୍ତ୍ତି ।

ଜନ୍ମିଥାନ୍ତ ଯେବେ ସଭ୍ୟ ଉନ୍ନତ ଦେଶରେ,
ବାଜୁଥାନ୍ତା ନାମ ତବ ଢଗ ଦିଗନ୍ତରେ ।

ଆବାଳବୃଦ୍ଧବନିତା ଦୁଃଖୀ ପ୍ରିୟ କବି,
ହୃଦ ମଧ୍ୟେ ରଖିଥାନ୍ତେ ତବ ଦୀନ ଛବି ।

ପୂର୍ବ ସୁକୃତ ବାହାନେ ପଡ଼ି ଏ ଉଷର,
ସୁପ୍ରତିଭ-ମଣି ଆଜି ବିନଷ୍ଟ ତୁମ୍ଭର ।

କବିତା-ଲତାରେ ଏକ ମାତ୍ର ଫୁଲ ଫୁଟି,
ଅନାଦରେ ସେ ଲତିକା ଗଲା ତ ଉଲୁଟି !

ଶୁଣିଅଛି, ଅଟ ତୁମ୍ଭେ ସୁଶୀଳ ବିନୀତ,
ତେଣୁ ତୁମ୍ଭ ନାମେ ଅଜି ଭଣିଲି ଏ ଗୀତ ।

କଠୋର ଶୃଙ୍ଖଳ ଛିଙ୍ଗି ଦିଅ ବିଷାଦର,
ପଦାଘାତ କର ଅତ୍ୟାଗ୍ରରେ ସମାଜର ।

ଦରିଦ୍ରତା ନୁହେଁ କବି ପ୍ରତିଭ-ନାଶକ,
ବିଘ୍ନ ସିନା ଭେଲ ଖାଣ୍ଟି ସୁନା ପରୀକ୍ଷକ ।

ପରମ ସୁନ୍ଦର କାବ୍ୟ ଲେଖି ପ୍ରିୟ କବି,
ସମୁଜ୍ଜ୍ୱଳ କର ମାତୃଭୂମି ମୁଖଚ୍ଛବି ।
କର୍ମନାଶା-ନୀରେ ହେଉ ଜାତି ବିସର୍ଜନ,
ବୈଶ୍ୟଠୁଁ ଶିଖନ୍ତୁ ଆଜି କ୍ଷତ୍ରିୟ ବ୍ରାହ୍ମଣ ।
ଭିକ୍ଷୁକ ସଙ୍ଗତେ ନୃପ-ମୁକୁଟ-ମଣ୍ଡିତ
କାଳବଳେ ହେବେ ସର୍ବେ ଭବୁଁ ଅନ୍ତର୍ହିତ ।
କିନ୍ତୁ ତୁମ୍ଭେ ଦୀନ କବି ରହିବ ଜୀବିତ,
ଯେତେ ଦିନ ଭବେ ଥିବ ଓଡ଼ିଆ ସାହିତ୍ୟ ।
ଯେତେ ଲୁଚାଇଲେ ନ ଲୁଚଇ ଅଗ୍ନି, ସତ୍ୟ,
ଲୁଚିଲେ କି ଚମ୍ପୂ କବି ବଳଦେବ ରଥ ?



# ଇନ୍ଦୁମତୀ

## ପୂର୍ବଭାଗ

( ସ୍ୱର—ବଙ୍ଗାଳଶ୍ରୀ )

ବିଦର୍ଭ ନଗରେ ପୁରବାସିଗଣ
ଆଜି ଅତି ଉଲ୍ଲସିତ,
ଆନନ୍ଦ-ସାଗର— ତରଙ୍ଗେ ନଗର
ହୋଇଅଛି ଉଦ୍‌ବେଳିତ ।
ବିଦର୍ଭାଧିପତି ଅନୁଜ୍ଞା ନିମନ୍ତେ
କରି'ଛନ୍ତି ସ୍ୱୟମ୍ବର,
ସମାଗତ ହୋଇ— ଅଛନ୍ତି ଅନେକ
ଦେଶର ନୃପକୁମର ।
ରୌଦ୍ରରେ ଶୋଭଇ ଖଡ଼ୀଶୈଳ ପ୍ରାୟେ
ତୁଙ୍ଗ ଶୁଭ୍ର ବସ୍ତ୍ରବାସ,

ମାତଙ୍ଗ-ବୃଂହିତ ଅଶ୍ୱ ହ୍ରେଷାରବେ
ପୂର୍ଣ୍ଣ ହୋଉଛି ଅକାଶ ।
ବିବିଧ ଦେଶୀୟ ବିବିଧ ବାଜଣା
ବାଜି ନାନା ରଙ୍ଗ ସ୍ୱରେ,
ଜନ-କୋଳାହଳ ସଙ୍ଗୀତରେ ମିଶି
ଶ୍ରବଣକୁ ସ୍ତବ୍ଧ କରେ ।
ଯୁବତୀମାନଙ୍କ ଆନନ୍ଦ ଚହଲେ
ପୂରିଅଛି ରାଜପୁର,
ବିରସ ଚିହ୍ନରେ ଅବସର ବିନ
ରହିଅଛି ହୋଇ ଦୂର ।
କେମାକୁ ସୁବେଶ କରିବା ନିମନ୍ତେ
ତତ୍ପର ସକଳ ଆଲୀ,
କେ ଘୋରେ ଚନ୍ଦନ କେ ଘୋରେ କସ୍ତୁରୀ
କେ ଗୁନ୍ଥଇ ପୁଷ୍ପମାଳୀ ।
ଅଳଙ୍କାର ପେଡ଼ୀ ଆଣି କେଉଁ ସଖୀ
ଫେଡ଼ି ଥୋଇଅଛି ପାଶେ,
ବାଛି ବାଛି ଯୋଷା ଲଗିହେବ ଭୂଷା
ଯେ ଅବା ତୁଠକୁ ଆସେ ।
ନାନା ରଙ୍ଗ ପାଟ— ଶାଢ଼ୀମାନ ଆଣି
ଦେଖାଉ'ଛି କେଉଁ ଆଲୀ,
ଯହିଁ ଅଭିରୁଚ ହେବ ସେହି ଶାଢ଼ୀ
ଲଗିହେବ ବୋଲି ବାଲୀ ।
ହସ୍ତ କଙ୍କତୀରେ ସାମଳ କୁନ୍ତଳ
ଗୁନ୍ଥି ଦେଉ'ଛି କେ ବେଣୀ,

କେ ସଖୀ ସମକ୍ଷେ ଠିଆ ହୋଇଅଛି
କନକ-ମୁକୁର ଯେସନ ।
ଏଣେ ରାଜଯକ୍ଷ ମନୋହର ବେଶେ
ହୋଇଲାଣି ସୁସଜ୍ଜିତ,
ଆନେ କି ଉପମା ? ଯା ଶୋଭା ଦେଖିଲେ
ସୁଧର୍ମା ହେବ ଲଜ୍ଜିତ ।
କ୍ରମେ କ୍ରମେ ହୋଇ ସମାଗତ ହେଲେ
କ୍ରମେ ସର୍ବ ନରପତି,
ସନ୍ଧ୍ୟାଦେବୀ କୋଳେ ଉଇଁ ଆସିଲେ କି
ଉଜ୍ଜ୍ୱଳ ତାରକାପଙ୍କ୍ତି ।
ବସିଲେ ତହିଁରେ ଅତି ମନୋହର
ସ୍ୱର୍ଣ୍ଣମୟ ସିଂହାସନେ,
ଆରମ୍ଭିଲେ ଅବା କମଳ ସକଳ
ଫୁଟିବାକୁ ପଦ୍ମବନେ ।
ତହିଁ ମଧ୍ୟେ ବସେ କୋଶଳ-ନୃପତି—
ସୁତ ଅଜ ଯୁବରାଜ,
ସୁରବୃନ୍ଦ ସଙ୍ଗେ ମହୀକି ଆଗତ
ହେଲେ କି ସେ ଦେବରାଜ !
ଅବା ଅକସ୍ମାତ ସ୍ୱଚ୍ଛ ନୀର ପୂର୍ଣ୍ଣ
କୁମୁଦ-ଶୋଭିତ ସରେ,
ବାଳାର୍କମଣ୍ଡଳ ପ୍ରତିବିମ୍ବ ଆସି
ପଡ଼ିଗଲା ଭିତରରେ ।
ପୂର୍ଣ୍ଣ କଳାକର ସମୁଦିତ ହେଲେ
ତାରକୁଳ ଯଥା ମ୍ଳାନ,

ଅଙ୍ଗ ଅଗମନେ ନୃପମାନଙ୍କର
ହ୍ରସ୍ୱ ହେଲ ଅଭିମାନ ।
କନ୍ୟା ଲଭ ଆଶା ଦୂର ହୋଇଗଲ
ମାନସରୁ ତାହାଙ୍କର,
ଶରଦ ଆଗମ ଦରଶନେ ଯଥା
ଆକାଶରୁ ଜଳଧର ।
ରାଜନ୍ୟମଣ୍ଡଳ ମଧ୍ୟେ ବିରାଜିଲ
ଏକାଳେ ରାଜନନ୍ଦନୀ,
ଇନ୍ଦ୍ରଶରାସନ ତଳେ ବିଲସିଲ
କିବା ସ୍ଥିରୁ ସୌଦାମିନୀ ।
ଅଥବା ରତନ— ଖଣିଗର୍ଭେ ହେଲ
ଦୀପଶିଖା ପ୍ରଜ୍ୱଳିତା,
ନବ ବିକସିତ କମଳ-କାନନେ
କମଳା ବା ବିରାଜିତା ।
ରାଜସୁତା ହସ୍ତେ— ଆହ୍ଲାଦଦାୟିନୀ
ବରମାଳ୍ୟ ଅଛି ଧରି,
କୁମୁଦମାଳିନୀ ଶରଦ-କୌମୁଦୀ
ଶୋଭା-ଗର୍ବ ଅପହରି ।
ବୃଦ୍ଧି ଅଦଭୁତେ ଅପୂର୍ବ ଲବଣ୍ୟ
ରୂପସୀ ରୂପସାଗରେ,
ରୂପଲୋଭୀ ନୃପ-- କୁମାରଙ୍କ ମନ—
ମୀନେ ବୁଡିଗଲେ ଖରେ ।
ମାଲ୍ୟ ଲଭିବାକୁ ନୃପ-ସୁତମାନେ
ସମସ୍ତେ ଲୋଲୁପଚିତ୍ତ,

ବୁଦ୍ଧିହିତ ଅଳି— ବୃନ୍ଦ ବୃନ୍ଦେ ଯଥା
ଏକ ପଦ୍ମ ବେଢ଼ିଥିବ ।

ତାହା ଭାଗ୍ୟବାନ— ଫୁଲର ସେ ମାଳା
ଅଧିକାରୀ ହୁଏ ତାର,
ମଗଧ-ପଦଙ୍କୁ ଭୁଞ୍ଜ ମଣିବ ସେ
ଯା ଗଳାକୁ ଯିବ ହାର ।

ଇନ୍ଦୁମତୀ ସଙ୍ଗେ ଥିଲା ସୁବୟସୀ
ସୁନନ୍ଦା ସୁଲକ୍ଷଣା,
ରାଜଗଣଙ୍କର କୁଳ ଶୀଳ ସବୁ
ତଥା ତାକୁ ଥାଏ ଜଣା ।

ପ୍ରଥମେ ମଗଧ— ନାଥଙ୍କ ସମ୍ମୁଖୁ
ଜେମାକୁ ନେଇ ମିଳିଲା,
ଲଳିତ ବଚନେ ତାଙ୍କ ଯଶ ଗୁଣ—
ଚମ୍ପୁ ବିସ୍ତାରି କହିଲା ।

ଶୁଣ ଲୋ ସୁନ୍ଦରି ! ପୁରତେ ମଗଧ—
ପତି ଜଗଦେକଇନ୍ଦୁ,
ମର୍ତ୍ତ୍ୟ-ମଣ୍ଡଳର ଲଲାଟମଣ୍ଡିତ
ସୁରମ୍ୟ ସିନ୍ଦୁରବିନ୍ଦୁ ।

ପ୍ରଜାବତ୍ସଳ ଦେବପରାୟଣ
ରୂପ ଅତି ଅଭିରାମ,
ପ୍ରବଳ ପ୍ରତାପୀ ପରବଳ ତାପି
ସାର୍ଥ ପରନ୍ତପ ନାମ ।

ଇଚ୍ଛା ହେଲେ ତୋର ଏହି ନୃପଙ୍କର
ଶ୍ରୀକର କର ଧାରଣ,

ଶାରଦୀୟ ଚନ୍ଦ୍ର — ସମୀପେ ରୋହିଣୀ
ପରସ୍ୱେ ହୁଅ ଶୋଭନ ।
ମୁହଁ ମୋଡ଼ି ଦେଇ — ସେଠାରୁ ଗମନ
କଲେ ସେ ଗଜଗାମିନୀ,
ନିଶାକରଠାରେ — କେବେ କି ପ୍ରସନ୍ନ
ହୋଇଅଛି କମଳିନୀ ?
କିଶୋରୀମଣିଙ୍କ — ଚତୁଁ ପ୍ରିୟସଖୀ
ନେଇ ଅଙ୍ଗପତି ପାଶେ,
ସକାଙ୍କ ସୁନ୍ଦର — ପଣକୁ ବଖାଣି
କହିଲା ମଧୁର ଭାଷେ ।
ଦେଖ ଖଞ୍ଜନାକ୍ଷି ! — ବଳେ କରିଛନ୍ତି
ବ୍ରୀଡ଼ାୟୁ ଅନଙ୍ଗ ରୂପ,
ନବୀନ କିଶୋର — ମୁକୁଠ ଏହୁଣ୍ଟି
ଅଙ୍ଗମଣ୍ଡଳର ଭୂପ ।
ଅତି ସୁକୁମାର — ନୃପତିକୁମାର
ନିଖିଳ ଗୁଣମଣ୍ଡିତ,
ବିଭବସମ୍ପନ୍ନ — ଅତି ବିଚକ୍ଷଣ
ନାନା ବିଦ୍ୟାରେ ପଣ୍ଡିତ ।
ପବିପନ୍ନ କୁଳ— — ଭସୃଦ ବୀର ଏ
ସୁହୃଦଶୁଭଦ ଧୀର,
ନୀତିବିଶାରଦ — ସମରକୁଶଳ
ଦୃଷ୍ଟିଭେଦୀ ଯାର ତୀର ।
ନୟନଶୁଭଗ — ସୁନ୍ଦର ମୂରତି
ଅପସରୀ ଲୋଭନୀୟ,

ଧରଣୀମଣ୍ଡଳେ ଅଟନ୍ତି ଏ ତୋର
ପଞ୍ଚପଦେ ଶୋଭନୀୟ ।
ଗନ୍ଧାଢ୍ୟ ହେଲେ ହେଁ ଭ୍ରମରରେ ଯଥା
କେତକୀ ନୁହେ ସେବିତ,
ତରୁଣ ରୂପରେ ରାଜନନ୍ଦନୀର
ଚିତ୍ତ ନ ହେଲା ମୋହିତ ।
ତହୁଁ ନେଇ ତାକୁ ଅବନ୍ତୀନୃପତି
ସମକ୍ଷରେ ସହଚରୀ,
ବୋଲେ, ଦେଖ ଦେଖ ଥରେ ଚଳାପାଙ୍ଗି
ପୁରତେ ନୃପକେଶରୀ ।
ଦୀର୍ଘ କଳେବର ମହାଶକ୍ତିଶାଳୀ
ବୃଷସ୍କନ୍ଧ ବୀରବର,
ନୃପତିଶ୍ରୀଙ୍କ ଲ— ସମାଜେ ଦର୍ଶନ୍ତି
କେଶରୀ ପ୍ରାୟେ ଭାସ୍ୱର ।
ଶ୍ରୀମୁଖ-ମୁକୁରେ ଉତ୍ସାହ ସାହସ
ହେଉଛି ପ୍ରତିବିମ୍ବିତ,
କ୍ଷତ୍ରିୟଧର୍ମ କି ବୀରରସ ଅବା
ବିଗ୍ରହ ଧରି ଶୋଭିତ ।
ରାଜଧାନୀ ପାଶେ ବହେ ଯାର ସ୍ୱଚ୍ଛ—
ନୀର ଶିପ୍ରା ସ୍ରୋତସ୍ୱିନୀ,
କଳ ରାଜହଂସ— ରାଜି ବିରାଜିତ
ଘନକଲ୍ଲୋଳମାଳିନୀ ।
ରମ୍ୟ ଶୁଭ୍ର ଅଙ୍ଗ— ଲହରୀ ବିତାନ
ରାଜପ୍ରାସାଦ ତା ତୀରେ,

ସଦା ସମୁଜ୍ଜ୍ୱଳ ମହାକାଳ-ଚିର—
ସୁଧାକର-କୌମୁଦୀରେ ।
ଶିବସେବାର୍ଥିନୀ ବାମାଏ ପ୍ରଭାତେ
ଶିପ୍ରାସ୍ରୋତେ କରି ସ୍ନାନ,
ଚିର ଦ୍ୱିଜ ମୃଦୁ ମଧୁସମ ସ୍ୱରେ
କରନ୍ତି ସଙ୍ଗୀତ ଗାନ ।

ପ୍ରତିଧ୍ୱନି ଛଳେ ଦେଉଳ ହିଁ ତାଙ୍କ
ସଙ୍ଗିଣୀରେ ଯୋଗ ଦିଏ,
ସେ ସଙ୍ଗୀତ ଶୁଣି ନର ଦମ୍ଭ କେତେ,
ତରଳି ସିବେ ପଡ଼ିଏ ।

ରତ୍ନ-ଖଚିତ ଚାମର ଚାଳନ୍ତି
ପାଶେ ବାରବାମାକୁଳ,
କ୍ଷୀଣ କଟିତଟେ ଶୋଭା ଦିଶେ ତାଙ୍କ
ହସ୍ତସୂଚିତ ଦୁକୂଳ ।

ସେହି ଶୋଭାଶାଳୀ ପୁରେ ପୂଜନୀୟା
ଲକ୍ଷ୍ମୀ ହେବାକୁ ଦଳମ,
ଥିଲେ ଧର ଏହି ନରବରଙ୍କର
ସୁନ୍ଦର କର-ପାରସ ।

ନିଶାନ୍ତ ଉଦିତ ଭାର୍ଗବ ନିକଟ
ଚଳଇ ଯଥା ଯାମିନୀ,
ମୃଦୁ ପାଦବ୍ରେ ତହୁଁ ଚାଲିଗଲା
ମତ୍ତମାତଙ୍ଗଗାମିନୀ ।

ତହୁଁ ମଣିକାଣି କାର୍ତ୍ତବୀର୍ଯ୍ୟବଂଶୀ
ପ୍ରତାପ ନୃପତି ଅଗ୍ରେ,

କ୍ଷଣପ୍ରଭା ପ୍ରାୟେ ଝଟକେ ଦେଖା ଦେଇ
ଗମନ କଲେ ଅମ୍ବରେ ।

ମଥୁର-ନରେଶ ସମୀପରେ ଠିଆ
ହୁଅନ୍ତେ ସେ ବରାଙ୍ଗନା,
ସମ୍ବୋଧନ କରି ଉଚ୍ଚସ୍ୱରେ କହେ
ବସୁଧା ପିକବଚନା ।

ଶୁଣିଥିବୁ ଶଙ୍ଖ— ମୁଖ ! ବୃନ୍ଦାବନ
ପ୍ରକୃତି-ଶୋଭା-ସଦନ
ସ୍ଥାନେ ସ୍ଥାନେ ସ୍ଥୁରୁ ଲତାକୁଞ୍ଜପୁଞ୍ଜ—
ତମ୍ବୁ ଠେକନ୍ତି ମଦନ ।

କୁସୁମିତ ହୋଇ ଶୋଭା କରେ ତହିଁ
ତରୁସମାଶ୍ରିତା ବଲ୍ଲୀ,
ଦିଗ ଅମୋଦିତ କରନ୍ତି ବିକଶି
ମାଧବୀ ମାଲତୀ ମଲ୍ଲୀ ।

ମନ୍ଦାନିଳ ହସ୍ତେ ଦୋଳାଇ ପ୍ରଭାତେ
ପ୍ରଫୁଲ୍ଲ ପ୍ରସୂନାବଳୀ
ପ୍ରକୃତି-ସୁନ୍ଦରୀ ଦେଉଥାଏ ନିତି
ସ୍ମରଣରେ ପୁଷ୍ପାଞ୍ଜଳି ।

ସଚପଳ ନବ— ଘନପଟଳକୁ
ହସଇ ଯା ବୀଚିବଳୀ,
ଅଙ୍କେ ଧରି ଦଗ୍ଧ— ରଜତବରଣ
ନଟପଟୁ ମୀନାବଳୀ ।

ପ୍ରବାହିତ ବନ ମଧ୍ୟରେ ଯମୁନା
ଜମ୍ବୁଶ୍ୟାମରୁଚିଧାରୀ,

ବନଲକ୍ଷ୍ମୀଙ୍କର ଉରସୁଶୋଭିତ
ଇନ୍ଦ୍ରନୀଳମଣି ହାର ।
ଘନ-କୁଶଳସ୍ଥ କଦମ୍ବ କାନନ
ମନୋହର ଚୂତବନ,
ଶୁଭେ ଯହିଁ ସଦା ପିକ-ଦମ୍ପତିର
ଶ୍ରବଣଶୁଭଗ ସ୍ୱନ ।
ଜମ୍ବୁବନେ ଯହିଁ ଶୁକକୁଳ ବସି
ସୁଖେ କରନ୍ତି ବିଶ୍ରାମ,
କପୋତଯୁଗଳ କୁହୁକୁହୁ ରବେ
ମୁଖରିତ ଯେଉଁ ଧାମ ।
ସେ ବିପିନ-ତଟ ବିହାରରସିକ
ଏହି ନରନାଥଙ୍କର
କର-କଞ୍ଜ ଧରି କରଭ-ରଦନା !
ବିଳାସରେ ଦିନ ହର ।
ତହିଁରେ ଚତୁର୍ଥ ବରବର୍ଣ୍ଣିନୀର
ମାନସ ଭୁଲିଲା ନାହିଁ,
ମାନସରକେଳି— ଲାଳସୀ ମରାଳୀ
କାସାରେ ରସିବ କାହିଁ ?
ତଦନ୍ତେ କହିଲ ଅଗ୍ରତେ ମହେନ୍ଦ୍ର
ଶୈଳ-ଅଧିତ୍ୟକାବାସୀ,
ରଙ୍ଗେ ବସିଥିଲେ ଦାକ୍ଷିଣାତ୍ୟ ମହୀ—
ପତି ବୀରପଦଧାରୀ ।
ଲବଙ୍ଗଲତାର କୁସୁମ ସୁବାସେ
ପୁର ଯାର ସୁରଭିତ,

ରମଣୀମଣିର କରୁଣା ବାହାନେ
ହେଲେ ଅତି ସନ୍ତାପିତ ।
ତପ୍ରେ ନୟନ— ଅୟନେ ଅଗତ
ପାଣ୍ଡ୍ୟ ଦେଶ ଅଧୀଶ୍ୱର,
ପାଣ୍ଡୁ ମହାରାଜ ଋଦ୍ଧି ବୃଦ୍ଧିଦାୟୀ
ଯାର ବାହୁଶିରେ ଶର ।
ଶୌର୍ଯ୍ୟ-କାନ୍ତି-ରବି ପ୍ରଚଣ୍ଡ କିରଣ
ଭବେ ଯାର ପ୍ରକାଶିତ,
ଥାଉ ଆନ ଜନ ପ୍ରତାପରେ ଯାର
ରାବଣ ସଦା ଶଙ୍କିତ ।
ମଳୟ ଶଇଳ ନାନା ଉପହାରେ
ସେବା କରେ ଯା ପୟରେ,
ଇନ୍ଦୁମତୀ ତାଙ୍କୁ ନିମଜ୍ଜାଇ ଦେଲେ
ଲଜ୍ଜା-ଜଳଧି-ପୟରେ ।
ବାଳା-ଭଗୀରଥୀ ପ୍ରୟାଣ ରଚନ୍ତି
ସାଗରସଙ୍ଗମ ପାଇଁ,
ଉପନଦୀ ପରି ରାଜାଙ୍କର ଚିତ୍ତ
ତା ପଛେ ଗଲେ ଗୋଡ଼ାଇ ।
ତହୁଁ ବୁହି ଦେଲା ତରୁଣରତନ
ଶତମଦନସୁନ୍ଦର,
ଦିବାକରକୁଳ— ସମୁଦ୍ରସମ୍ଭୂତ
ସୁବିମଳ ସୁଧାକର,
ମୁଖମଣ୍ଡଳରୁ ଦରହାସ-ସୁଧା—
ଧାର ଯାଉଅଛି ସ୍ରବି,

ଚାହିଁ ରାଜସୁତା          ଚନ୍ଦ୍ର-ଚନ୍ଦ୍ର-ଶିଳ
ସହଜରେ ଗଲା ଦ୍ରବ ।

ହୃଦ-ସରସୀରେ          ପ୍ରେମ-କୁମୁଦିନୀ—
ବନ ହେଲା ବିକଶିତ,
ନେତ୍ର-ଜୀବଞ୍ଜୀବ          ରଙ୍ଗେ ନୃତ୍ୟ କଲା
ହୋଇ ଅତି ଉଲ୍ଲସିତ ।

ଅନିମେଷ ନେତ୍ରେ          ଚାହିଁ ଜେମାମଣି
ମନେ ମନେ ହେଲା ସୁଖୀ,
ନବୋଦିତ ସୂର୍ଯ୍ୟ—          ମଣ୍ଡଳ ଚାହିଁଲେ
ପ୍ରାତେ ଯଥା ସୂର୍ଯ୍ୟମୁଖୀ ।

ସଂଶୟିତ ମନେ          ଭାବୁଥିଲେ ଅଜ
ଲଭିବ କି ନା ଶୋଭାଙ୍ଗୀ,
ବାମେତର ବାହୁ          ସ୍ପନ୍ଦ ହୋଇ ସେହୁ
ସଂଶୟକୁ ଦେଲା ଭଙ୍ଗି ।

ଜେମା ମନ ଜାଣି          କହିଲା ସୁନନ୍ଦା
ସହାସ୍ୟରେ ଅଜ ଯଶ,
ଏହୁଟି ଅମଳ—          କମଳଲୋଚନ !
ରଘୁବଂଶ-ଅବତଂସ ।

ନୟନର ପ୍ରୀତି          ସମ୍ପାଦଇ ଆହା
ମୂରତି କି ମନୋହର,
ଜାନୁଲମ୍ବି-ଭୁଜ          ପ୍ରସନ୍ନବଦନ
ସୁଗଠିତ କଳେବର ।

ସକଳସ୍ତ୍ରୀଙ୍କର          ହୃଦ-ରତ୍ନହାର
ରଘୁ ରାଜାଙ୍କର ସୁତ,

ଶ୍ରୀଅଙ୍ଗରେ ରହି ଅଳଙ୍କାରମାନେ
ହୋଇଛନ୍ତି ଅଳଙ୍କୃତ ।
ରଘୁ ମହାରାଜ ପ୍ରବଳ ପ୍ରତାପୀ
ଅଦ୍ୱିତୀୟ ଧନୁର୍ଦ୍ଧର,
ଧନୁଷ୍ଟଙ୍କାର ଯାର ଶୁଣି ଅବାଳମ୍ବେ
ପ୍ରକମ୍ପେ କନ୍ଦରେଶ୍ୱର ।
ରଜନୀରେ କଲେ ଅଶେଷ ସୁବର୍ଣ୍ଣ
ରାଜକୋଷେ ବରଷଣ,
ସ୍ୱର୍ଣ୍ଣରାଶି ଦେଇ ନୃପତିପୁଙ୍ଗବ
ତୁଷ୍ଟ କଲେ ମୁନି-ମନ ।
ପିତୃବୃତ ସତ— ତମ ଅଶ୍ୱମେଧେ
ଯାଇ ଅଶ୍ୱରକ୍ଷଣେ
ତୁରଙ୍ଗମଶ୍ରେର ବଜ୍ରଧର ସଙ୍ଗେ
ମାତିଗଲେ ମହାରଣେ ।
ଅମୋଘ କୁଳିଶ ମୋଘ ହୋଇଗଲା
ପଡି ରଘୁ-ଶିରୁ ଅଙ୍ଗେ,
ସୁରପତି ଦେଇ ବହୁ ଧନ୍ୟବାଦ
ସନ୍ଧି କଲେ ରଘୁ ସଙ୍ଗେ ।
ଦିଗ୍‌ବିଜୟ କରି ବଜାଇଥିଲେ
ଚୌଦିଗେ ବିଜୟ-ବାଜା,
ଅଖିଳ ଧରଣୀ— ମଣ୍ଡଳରେ ଏକ
ଚକ୍ରବର୍ତ୍ତୀ ମହାରାଜା ।
ନୃପତିମଣ୍ଡଳ ନତଶିର ହୋଇ
ପୂଜୁଛନ୍ତି ରଘୁପଦେ,

ରଘୁଙ୍କ ଭବନ ହୋଇଅଛି ପୂର୍ଣ୍ଣ
ଦେବଦୁର୍ଲ୍ଲଭ ସମ୍ପଦେ ।
ହମାଦ୍ରି-ନିର୍ଝର— ଧୌତ-ରମ୍ଭାବନ-
ବିହାରୀ ବାରଣଗଣ,
ସିନ୍ଦୂରରଞ୍ଜିତ ମସ୍ତକେ ପ୍ରାଙ୍ଗଣେ
କରୁଛନ୍ତି ବିଚରଣ ।
କୈଳାସ ଗିରି ଉପତ୍ୟକାବାସୀ
ଚମରୀ ଶ୍ୱେତ ଚାମର,
ଶୋଭା ସମ୍ପାଦଇ ଶିରେ ସଞ୍ଚାଳିତ
ହୋଇ ମହାରାଜାଙ୍କର ।
ହମଗିରି-ଗୁହା— କୁଞ୍ଜେ ଯେଉଁ ମଣି
ନାଶୁଥିଲେ ଅନ୍ଧକାର,
ପୁଞ୍ଜ ପୁଞ୍ଜ ହୋଇ ସଦା ଉଜ୍ଜ୍ୱଳିତ
କରୁଛନ୍ତି ନୃପାଗାର ।
ମହୋଦଧି ଭୂମି ତରଙ୍ଗକ୍ଷାଳିତ
ଉଜ୍ଜ୍ୱଳ ମୁକ୍ତାପଟଳ
ମାଳ ମାଳ ହୋଇ ରାଜପୁରେ କେତେ
ଝୁଲି ଦିଶେ ଝଲମଲ ।
ଅମରାବତୀକି ହସେ ରାଜଧାନୀ
ସୁନ୍ଦର ସୁନ୍ଦରପଣେ,
ସୁଧା-ଧବଳିତ ବଦନକୁ ଚାହିଁ
ସରଯୂ-ନୀର-ଦର୍ପଣେ ।
ସରଯୂ ତଟରୁ ରମ୍ୟ ଉପବନ
ସୁବାସ ପୁଷ୍ପ ପସରା ।

ବୋଲି ଦେଉଥାଏ ନଗରୀ ଅଙ୍ଗରେ
ବହୁ ଅତି ଅନୁରାଗ ।
ବିଳାସିନୀକୁଳ ମୃଦୁଳ ଅଙ୍ଗୁଳି
ତାଡିତ ମୃଦଙ୍ଗନାଦ,
ଅଭ୍ରଙ୍କଷ ସୌଧେ ନିନାଦିତ ହୋଇ
ଘୋଷଇ କେତେ ପ୍ରସାଦ ।
ଅବିଶ୍ରାନ୍ତ ତହିଁ ବହି ଯାଉଥାଏ
ଆନନ୍ଦର ପ୍ରସ୍ରବଣ,
ସୁଷମା-ବାଳାର ଅଟଇ ସେ ପୁର
ବଚିତ୍ର ରଙ୍ଗସଦନ ।
ମେଦିନୀମଣ୍ଡନେ ବରମାଲ୍ୟ ଦିଅ
ଏହି ଯୁବରାଜ ଗଳେ,
ମରକତ-ବୃକ୍ଷେ ହେମ-ଲତା ପ୍ରାୟେ
ଶୋଭା ହେବୁ ଭୂମଣ୍ଡଳେ ।
କେବେ ପୁଷ୍ପବନେ କେବେ ତୁଙ୍ଗ ସୌଧ—
ଚୂଳେ ପ୍ରିୟନାଥ ସଙ୍ଗେ,
ନବ ଯଉବନ କୃତାର୍ଥ କରିବୁ
ବିଳସି କୌତୁକ ରଙ୍ଗେ ।
ସରଯୂପୁଳିନେ ବିହାର ସମୟେ
ତଟସ୍ଥ ପାଦପାବଳୀ,
ମୁଗ୍ଧବଧୂ ଜାଣି ନବ ଅନୁରାଗେ
ଶିରେ ଦେବେ ପୁଷ୍ପାଞ୍ଜଳି ।
ସରଯୂ ଅନାଇ ମୀନ-ନୟନରେ
ବତାଇ ଲହରୀ-କର,

ସ୍ନେହବଶେ ତୋର ପଦପ୍ରକ୍ଷାଳନେ
ହେଉଥିବ ଡରଡର ।
ରାଜସୁତା ତହିଁ— ପ୍ରତିମା ପରାୟେ
ରହିଲେ ଅଜଙ୍କୁ ବୁଝି,
ଲଜ୍ଜା ଅନୁରାଗେ ମନୋଗତ ଭାବ
ପ୍ରକାଶି ପାରିଲେ ନାହିଁ ।
ସାତ୍ତ୍ୱିକ ଲକ୍ଷଣ ବାଳା-ମନୋଭାବ
କରିଦେଲା ସୁପ୍ରକାଶ,
ରଜନୀ ତିମିରେ ଲୁଚି ପାରଇ କି
ବନମଲ୍ଲିକାର ବାସ !
ତା ଜାଣି ସୁନନ୍ଦା ନ ଜାଣିଲ ପରି
ବୋଲେ ରାଜହଂସଗତି,
ଅନ୍ୟ ନରପତି ସମୀପକୁ ଚାଲ
ଯିବା ବଳେ ଯେବେ ମତି ।
ତା ଶୁଣି କୁମାରୀ ସୁନନ୍ଦା ଉପରେ
କଲେ କୋପ ଦୃଷ୍ଟିପାତ,
ବନ-ବିହାରିଣୀ କରିଣୀ ଯେମନ୍ତେ
ପାଇଲେ ଅଙ୍କୁଶାଘାତ ।
ସୁଶୀଳାମଣି ସେ ସୁନନ୍ଦା ହସ୍ତରୁ
ମାଳିକା ଦେଇ ବଢାଇ,
କଳ କଣ୍ଠସ୍ୱରେ ବୋଲେ ଯୁବରାଜ—
ଗଳାରେ ଦିଅ ଲମ୍ବାଇ ।
ଅନୁଜ୍ଞାତ ହୋଇ ସୁଧାନିଃସ୍ୟନ୍ଦିନୀ
କୁସୁମମାଳା ରୁଚିର,

ନେଇ ସହଚରୀ          ଯୁବରାଜ ଯୁବେ
କରିଦେଲେ ନିମନ୍ତ୍ରିତ ।

ବାଜିଲ୍ ବିବିଧ          ମଙ୍ଗଳ ବାଜଣା
ବାଜିଲା ମଙ୍ଗଳ-ଶଙ୍ଖ,
ଉଚ୍ଚରେ ମଙ୍ଗଳ—          ଶ୍ଳୋକ ଉଚ୍ଚାରିଲେ
ସନ୍ତୁଷ୍ଟ ଦ୍ୱିଜ ଅସଂଖ୍ୟ ।

ନୃପ-ଚାତକର          ସକ୍ଷ-ଗଗନକୁ
ଘୋଟିଲ୍ ବିଷାଦ-ଘନ,
ଅଜ-ହୃଦକ୍ଷେତେ          ଅବିରଳଧାରେ
ହେଲା ସୁଧା ବରଷଣ ।

ଭାଗ୍ୟବାନ ସଦା          ଭାଗ୍ୟଫଳ ଲଭେ
ଅଭାଗା ଲଭେ ଅଶିବ,
ସାଗର ମନ୍ଥନେ          କେଶବ କମଳା,
ଗରଳ ଲଭିଲେ ଶିବ ।

ନରପତିମାନେ          ଶିବିରକୁ ଗଲେ
କପାଳରେ ମାରି କର,
କୋଶଳରାଜ ଗଲେ          ରାଜଭବନକୁ
ସଙ୍ଗେ ଘେନି କନ୍ୟା ବର ।

ରତ୍ନବିଖଚିତ          ପଟ୍ଟସ୍ତୋମାବୃତ
କରେଣୁ ପୃଷ୍ଠରେ ବସି
ଶଚୀ ଏକ ପରି          ନବବଧୂ ସଙ୍ଗେ
ବାଜେ ବାଲ୍ୟବନ୍ଧୁବଂଶୀ ।

ନଗରବାସୀଏ          ଅବଗତ ହୋଇ
ବର ଶୁଭ ଆଗମନ,

ପୂର୍ଣ୍ଣ କୁମ୍ଭମାନ ତୋରଣେ ତୋରଣେ
କରିଥିଲେ ସଂସ୍ଥାପନ ।
ରଞ୍ଜନାମ୍ବୁ ବେଣ ଧରିଥିଲେ ପୁଣି
ପୁର ଅଟ୍ଟାଳିକାବଳି,
କଲେ ସହକାର— ପଲ୍ଲବତୋରଣ
ଚତ୍ୱରପନ୍ତିକୁ ସାଜି !
ହୋଇଥାଏ ରମ୍ଭା ପାଦପ ରୋପିତ
ବେଦୀପାର୍ଶ୍ୱେ ରାଜପଥେ,
ମନ୍ଦାନିଳେ ମନ୍ଦେ ଦୋହଲି ଦୋହଲି
ନାଚୁଥାନ୍ତି ଅବିରତେ ।
ଯେତେବେଳେ ରାଜ— ପଥେ ଚଳେ ଅଜ
ସଙ୍ଗେ ବରଯାନିଦଳ,
ନଗର ମଧ୍ୟରେ ଉଠିଲା ମହା
ଆନନ୍ଦର କୋଳାହଳ ।
ମନୋହର ବର ଦର୍ଶନ ଲାଳସେ
ପୁର-ନରନାରୀଗଣ
କୌତୁକ-ନଦରେ ମନ-ତରୀ ମେଲି
ହର୍ଷରେ କଲେ ଗମନ ।
କୁଳବଧୂମାନେ ସୌଧ ଉପରକୁ
ଦ୍ରୁତପଦେ କଲେ ଗତି,
ସ୍ରସ୍ତ ବସନକୁ ହସ୍ତ-ପଦ୍ମେ ଧରି
ଧାଇଁଲା କେଉଁ ଯୁବତୀ ।
ମୁଖରିତ କଲା ସୌଧରାଜିକୁ
ଚରଣ ଭୂଷଣ ଧ୍ୱନି,

ବର ବିଜୟକୁ ମଙ୍ଗଳ-ସଙ୍ଗୀତ
ଗାଇଲା ସିନା ଅବନୀ ।
ଗନ୍ଧବେଗେ କାହା ଖୋଷା ଫିଟି ଖସି
ପଡ଼ିଥିଲା ପୁଷ୍ପଗଚ୍ଛ,
ସନ୍ଧ୍ୟାକବଳରୁ ଚନ୍ଦ୍ରମାମଣ୍ଡଳ
ମୁକ୍ତ ହୋଇଗଲା ଅବା !
ସୁନୀଳ ନିର୍ମଳ ଗଗନ କୋଳରୁ
ସ୍ଖଳିତ ତାରକା ଭଳି,
କେ ଘନକୁନ୍ତଳା ସ୍କନ୍ଧୁ କବରୀରୁ
ଖସି ଯାଉଥିଲା ଫୁଲ ।
କେ ରଙ୍ଗ ଦୁକୂଳ କେହୁ ପୀତ ଚେଳ
କେବା ଶୁକ୍ଳାମ୍ବର ଶାଢ଼ୀ,
ପିନ୍ଧିଥିଲେ ତ ବରାଙ୍ଗନାମାନେ
ଠିଆହେଲେ ଧାଡ଼ି ଧାଡ଼ି ।
ନାରୀ ନୁହନ୍ତି ସେ ନଗର-ଲଳନା
ସୁରମ୍ୟ କୁସୁମହାର,
ମଲ୍ଲିକା ଚମ୍ପକ ସଙ୍ଗରେ ମିଶାଇ
ଗୁନ୍ଥାହୋଇଛି ମନ୍ଦାର ।
ଅଥବା ଗୋମେଦ ପଦ୍ମରାଗ ସଙ୍ଗେ
ମୁକୁତା ଗ୍ରଥିତ ମାଳ,
ଅତି ସ୍ନେହ ଭାବେ ହୃଦୟ ଉପରେ
ଧରିଛି ନଗରୀ-ବାଳୀ ।
ଗବାକ୍ଷ ସକଳ ପରିପୂର୍ଣ୍ଣ ହେଲା
ଯୁବତୀ-ପଦ୍ମବଦନେ,

କୁନ୍ତଳକାନ୍ତବନ୍ତ      ପ୍ରତିବିମ୍ବ କି ସେ
ଝଶେ ଅଶେଷ ଦର୍ପଣେ ।
ଅନୁପମ ବର      ବର ଶୋଭା ଦେଖି
ସକଳ ନଗରବାସୀ,
ଆନନ୍ଦ-କଲ୍ଲୋଳ      ଚମତ୍କାର ଜଳ
ଜଳଧିରେ ଗଲେ ଭାସି ।
ସ୍ତମ୍ଭୀଭୂତ ହୋଇ      ରହିଲେ ବାମାଏ
ଯେସନେ ହେମ-ପ୍ରତିମା,
ପ୍ରୀତି ମନୋସାଧ      ଇନ୍ଦ୍ରିୟ ସକଳ
ଆଗ୍ରେ କଲେ ଚକ୍ଷୁସୀମା ।
ପୁଣି ପରସ୍ପରେ      କୁହାକୁହି ହେଲେ
ଆହା କେଡ଼େ ସୁକୁମାର !
ନବ ଅବତାର      ଧରିଛି କି ହର—
କୋପାନଳଦଗ୍ଧ ମାର ?
ନବ ସମୁଦିତ      ସୁଧାକରଜିତ
ବଦନ କେଡ଼େ ରଞ୍ଜନ ,
ନୟନଯୁଗଳେ      ଦେଉଅଛି ବଳେ
ବୋଲି ସେ ଅମୃତାଞ୍ଜନ ।
କି ନବ ବୟସ      ଅଳପ ଅଳପ
ଫୁଟି ଆସୁଅଛି ନଖ,
ଆହ୍ଲାଦକର      ଯଉବନ କାନ୍ତି
ପ୍ରତିଷ୍ଠିତ କରେ ଦକ୍ଷ ।
ଧନ୍ୟା ଇନ୍ଦୁମତୀ      ଅତି ଭାଗ୍ୟବତୀ
ବରଣ୍ୟ କଲେ ସ୍ୱୟମ୍ବର,

ଭାଗ୍ୟଦେବୀଙ୍କର   କରୁଣା ନ ହେଲେ
ଲଭିଥାନ୍ତେ କି ଏ ବର ?

ରାଜ-ନନ୍ଦିନୀ ସେ   ସହଜେ ଚତୁରୀ
ପ୍ରତିଭାଶାଳିନୀ ଧୀରା,
ନିର୍ବାଚନ କଲେ   ସ୍ଫଟିକମାଳାରୁ
କଣ୍ଠେ ଏକମାତ୍ର ହୀରା ।

କଞ୍ଜବର ପୃଷ୍ଠେ   ବର ବଧୂ ଘେନ
ଦିଶନ୍ତି କେଡେ ସୁନ୍ଦର ,
ପୂର୍ବାଚଳ ଚୂଳେ   କାନ୍ତା ଘେନ ହେଲେ
ଉଦିତ କି ଦିନକର ?

କହୁଁ କହୁଁ ଅଛ   ପରବେଶ ହେଲା—
ରଜାଙ୍କ ସିଂହ ଦୁଆରେ,
ଦର୍ଶକମଣ୍ଡଳ   ପ୍ରହସି ବାରଣେ
ରହିଗଲେ ସେହିଠାରେ ।

ଅନ୍ତଃପୁରବାସୀ   କାମିନୀଏ ଆସି
ସେଠାରୁ କନ୍ୟା ବରଙ୍କୁ,
ମହା ଆହ୍ଲାଦରେ   ଘେନିଗଲେ ବେଗେ
ଅନ୍ତଃପୁର ଚତ୍ୱରକୁ ।

କନକ ବେଦୀରେ   ତୋରଣ-ମଣ୍ଡିତ
ରତ୍ନମୟ ଆସ୍ତରଣେ,
ବସାଇଲେ ମଞ୍ଚେ   ହୁଳହୁଳି ଦେଇ
ଅନ୍ତଃପୁର ନାରୀଗଣେ ।

ବର ମନେ କରେ—   ବର୍ଣ୍ଣିନୀ ମନ ଯା
ପ୍ରେମେ ହୋଇଥିଲା ବନ୍ଦୀ,

କଗଜ ଜନକଙ୍କୁ ଦେଖାଇଲେ କ୍ଷଣେ
ପରସ୍ପର କର ଛନ୍ଦ ।
ଅଜ କାଣାଙ୍କିତ କରେ କୁମ୍ଭାଗର
ପ୍ରବାଳପାଠଳ କର
ଘନାଞ୍ଚିତ ରଶ୍ମି— ରେଖ ରେ ଅରୁଣ
ସଦୃଶ ହେଲା ସୁନ୍ଦର ।
କର ସଂସ୍ପରଶେ ପରସ୍ପର ତନୁ
ହୋଇଗଲା ଲୋମାଞ୍ଚିତ,
ମଳୟେ ଯେସନ ପାଦପ ବଲ୍ଲରୀ
ହୋଇଥାନ୍ତି ମୁକୁଳିତ ।
ହୋମ ଅନଳକୁ ସାକ୍ଷୀ କରି ବର
କନ୍ୟା କଲେ ପ୍ରଦକ୍ଷିଣ,
ସଂକଳପ କଲେ ଆଜୀବନ ପ୍ରୀତି—
ବନ୍ଧନ ନ ହେବ ଛିନ୍ନ ।
ଅନଳକୁ ସଦା ପ୍ରଦୀପ୍ତ ଉନ୍ନତ
କରଇ ଅନଳ-ଶିଖା
ପତ୍ନୀ ଯୋଗେ ପତି ସେପରି ହେବାର
ଧର୍ମନୀତି ଦେଲେ ଶିକ୍ଷା ।
ଅନଳ ଦୃଶ୍ୟରେ ବରବଧୂଙ୍କର
ମୁଖ ହେଲା ସ୍ୱେଦସିକ୍ତ,
ସ୍ୱେଦେ ବନ୍ଧିବିମ୍ବ ପଦ୍ମ ବଦନର
ପ୍ରଭା ହେଲା ଅତିରିକ୍ତ ।
ବସନ ଭୂଷଣ ରତନ ପଟଳ
ଲଭି ଅନୁକୂଳ କାଳ ।

ନିଜ ନିଜ ଶୋଭା ପ୍ରଦର୍ଶନ କଲେ
ପ୍ରକାଶି କିରଣଜାଲ ।
ବଧୂ ମୁଖ ଲଜ୍ଜା ବର ବଦନର
ଉତ୍କୃଷ୍ଟ ପ୍ରୀତି ଲକ୍ଷଣ,
ସେହୁ ସୁଯୋଗରେ କରି ନେଉଥାନ୍ତି
ପରସ୍ପରେ ଆଲିଙ୍ଗନ ।
ବରବଧୂଙ୍କର ପ୍ରସ୍ଫୁଷ୍ଟ ରୂପ
କରି କରି ଦରଶନ,
ପୁରବାସିନୀଏ ନବୀନ ଆନନ୍ଦ—
ଆଲୋକେ ଭରିଲେ ମନ ।
ସ୍ନାତକମଣ୍ଡଳ ଭୋଜରାଜ ନୃପ
ରାଜପ୍ରିୟ ବନ୍ଧୁଗଣ,
ବରବଧୂଙ୍କରେ ହରିଦ୍ରାରଞ୍ଜିତ
ତଣ୍ଡୁଳ କଲେ ବର୍ଷଣ ।
ତା ପରେ ତଣ୍ଡୁଳ ବରଷଣ କଲେ
ରମଣୀମଣ୍ଡଳ ଆସି,
କଙ୍କଣୀ କଙ୍କଣ ନୂପୁର-ନିକ୍କଣ
ସହିତ ହର୍ଷ ପ୍ରକାଶି ।
ଆଉ ଯାହା ଥିଲା କୁଳ ପ୍ରଥାମତେ
ପରିଣୟର ବିଧାନ,
ଭୋଜରାଜ ତାହା ସମାରୋହ ସହ
କରିଦେଲେ ସମାଧାନ ।
ତହୁଁ କୋମାମଣି ପରିଜନବର୍ଗ
ଛାମୁରେ କରୁଣ ସ୍ୱନେ,

ଗଦଗଦେ କହୁ          ମେଲାଣି ମାଗିଲେ
ଲୋତକପୂର୍ଣ୍ଣ ନୟନେ ।
ବିନୟରେ କରି          ଗୁରୁଜନଙ୍କର
ଚରଣଯୁଗେ ବନ୍ଦନ,
ପ୍ରିୟ ବାକ୍ୟ କହି          ସଙ୍ଗିନୀମାନଙ୍କ
ପ୍ରେମେ ଦେଲେ ଆଲିଙ୍ଗନ ।

କାନ୍ତ ଲଭି ସୁଖୀ          ପରିଜନଙ୍କର
ବିରହେ ମନ ବିରସ,
ଜେମା ହୃଦୟରେ          ଆନନ୍ଦ ରସରେ
ମିଶିଗଲା ଶୋକରସ !
ଭଗିନୀ ବିଦାୟ          ନେଲେ ଭୋଜରାଜ
ଦେଇ ବହୁବିଧ ଧନ,
ଆପେ ଚନିଦନ          ସଙ୍ଗେ ସଙ୍ଗେ ଯାଇ
ଫେରିଲେ ନିଜ ଭବନ ।

ଯୁବରାଜ ନିଜ          ଦଳବଳ ଘେନି
ପ୍ରିୟା ସଙ୍ଗେ ରମ୍ୟ ରଥେ,
ବସି ନିଜ ରାଜ୍ୟ          ଅଭିମୁଖ ହୋଇ
ଚଳି ଯାଉଥିଲେ ପଥେ ।
ରମଣୀରତନ          ଲାଭରୁ ବଞ୍ଚିତ
ହୋଇ ନୃପତିକଳାପ,
ହୃଦୟ-କାନନେ          ଈର୍ଷାନଳ ଜାଳି
କରୁଛନ୍ତି ମନସ୍ତାପ ।

ମସ୍ତକେ ଅମ୍ବର          ପାଦ ଦେଇଛନ୍ତି
ଦିଗ୍‌ବିଜୟୀ ରଘୁ କାଲି,

'ଅଜି ତାଙ୍କ ପୁଅ ସଙ୍ଗରେ ଅମ୍ବର
ବଦନେ ଘଷିଲେ କାଳି ।
ଏତେ ଅପମାନେ କେଉଁ ରୂପେ ଯାଇ
ପୁରେ ଦେଖାଇବା ମୁଖ,
ବାରମ୍ବାର ଏତେ ଲାଞ୍ଛନାକୁ ସହି
ଜୀଇବାର ବଡ଼ ଦୁଃଖ ।
ଛନ୍ଦି କୁଳେ ଜନ୍ମି କାପୁରୁଷପଣେ
ଜୀଇଲେ ଜୀବନ ଯେବେ,
କହ ଭବେ ଆଉ ଜୀବନ୍ମୃତ ବୋଲି
କାହାକୁ କହନ୍ତି ତେବେ ?
କନ୍ୟାଟିକି ନେଇ ଠକ ଯାଉଅଛି
ଅଚ୍ଛାଦ ସୈନ୍ୟଜାଲ,
କପୋତ-ଦମ୍ପତି ପଶ୍ଚେ ତାହାକୁ
ବାନ୍ଧି ନେଇପିବା ସ୍ଥଳ ।
ଏକମେଳ ହେଲେ ବଣ୍ଟୁଭବନରେ
ଅସାଧ୍ୟ ହୁଏ ସହଜ,
ସୂକ୍ଷ୍ମ ଶଣସୂତ୍ର ମେଳ ହେଲେ ଦେଖ
ବନ୍ଧ ହୁଏ ମତ୍ତ ଗଜ ।
ଏମନ୍ତ ବଚନ ନରପତିମାନେ
ସଦର୍ପେ କରି ଗମନ,
ବନ୍ଧୁ ଦଳବଳ ସଙ୍ଗେ ମୃଗରାଜ
ପ୍ରାୟ କଲେ ଆକ୍ରମଣ ।
ଦେଖିଲେ କୁମାର ଭୟଙ୍କରରୂପୀ
ବରଷାକାଳ ସମାନେ,

ଅସଂଖ୍ୟ ବାହୁନୀ ଘେନି ଆସୁଛନ୍ତି
ବଦ୍ଧେୟୀ ନରେଶମାନେ ।
ଖଡ୍‌ଗ ତଲବାର ଚପଳା ଝଲକେ,
ସ୍ତନିତ ଗଜଗର୍ଜନ,
ପତାକା ଉଡ୍‌ଡୀନ ବକପନ୍ତି, ସେନା—
ଗର୍ଜନ ଦୁନ୍ଦୁଭି-ସ୍ୱନ ।

କେତକୀ-ଶୋଭିତ କରବାଳପୁଞ୍ଜୀ,
ଧନୁ ଇନ୍ଦ୍ର ଶରାସନ,
ଘେନି ଅଶ୍ୱ-ସ୍କନ୍ଧ ଗ୍ରାମ ଜଳଦରେ
ଧାଉଁଛନ୍ତି ସୈନ୍ୟ-ଘନ ।

ଅଶ୍ୱ-ସେନାନନେ ବର୍ଷଣ କରିବେ
ଅବିରଳ ଶରଧାର,
ଜାଣି ଯୁବରାଜ ଅମାତ୍ୟଙ୍କୁ ଦେଲେ
ପ୍ରଜାସଂରକ୍ଷଣ ଭାର ।

ଧରି ଧନୁଃଶର ହେଲେ ଅଗ୍ରସର
ରଣସ୍ଥଳୀକି ଆପଣେ,
ନିଜ ବାହିନୀକି ଉତ୍ତେଜନା କରି
କହିଲେ ହେ ବୀରଗଣେ !

ଦେଖ ଦେଖ ଭାବୁ, ଧାଇଁ ଆସୁଅଛି
ଅତତାୟି-ଅକୂପାର,
ଭୁଜବଳ-ପୋତ ଅବଲମ୍ବନରେ
ଆସ ହୋଇଯିବା ପାର ।

ପୋତ ମଜ୍ଜନକୁ ଭୟ ନ କରିବ
ଅଜ ଯହୁଁ କର୍ଣ୍ଣଧାର,

ପ୍ରାଣପଣେ ରଣେ ଅଗ୍ରସର ହୋଇ
ରିପୁବଳ ବେଗେ ମାର ।
ସଂଗ୍ରାମରେ ନାଶ ହେଲେ ସ୍ୱର୍ଗବାସ,
ଜିତିଲେ ଭୋଗ ସମସ୍ତ,
ପଶ୍ଚାତ୍‌ପଦ ହେଲେ ଅପଯଶ ଲଭି
ସହିବେ ନରକଗତି ।
କହୁଁ କହୁଁ ବେନି, ଦଳେ ଲାଗିଗଲା
ଅତି ଭୟଙ୍କର ରଣ,
ରଥୀ ସଙ୍ଗେ ରଥୀ ପଦାତି ପଦାତି
ଆଧୋରଣେ ଆଧୋରଣ ।
ସାଦିବର ସଙ୍ଗେ ସାଦୀଏ ଯୁଝିଲେ
କରେ ଧରି କରବାଳ,
ସମର-କ୍ଷେତ୍ରକୁ ତିମିରେ ଆବୃତ
କରିଦେଲେ ଶରମାଳ ।
ଯୋଦ୍ଧୃଗଣ ଚାହୁଁ ଅମ୍ବରନୀଳ
ବାରି ତ ପାରିଲେ ନାହିଁ,
ଆପେ ଆପଣାର ବଳ ସଙ୍ଗେ ରଣ—
ରଙ୍ଗେ ମାତି ଗଲେ କାହିଁ ।
ନୃପଗଣ ସଙ୍ଗେ ଯୁଝିଲେ ନିଃଶଙ୍କେ
ଏହା ଅତି ମହାବଳୀ,
ଦନ୍ତାବଳ-ପୃଷ୍ଠେ କେଶରୀ ପରାୟେ
ରିପୁ ଦେଉଥାନ୍ତି ଦଳି ।
କ୍ଷଣେ ଧନୁର୍ଦ୍ଧର କ୍ଷଣେ ଖଡ୍ଗପାଣି
କ୍ଷଣେ କ୍ଷଣେ ଧରି ଗଦା,

ପ୍ରହାର ଘାତରେ ରିପୁ-କାନନକୁ
କରି ଦେଉଥାନ୍ତି ପଦା ।
ସଙ୍ଘଗଣ ଥରେ ଥରେ ରୌଦ୍ରଗରୁ
ବେଢି ହୋଇ କୋପଭର,
ଅଜଙ୍କ ଉପରେ ଅବିଚ୍ଛିନ୍ନଧାରେ
ବରଷାଉଥିଲେ ଶର ।

ଅଜ ପ୍ରଚଣ୍ଡରେ ଶତଖଣ୍ଡ କରି
ଆଗତ ମାର୍ଗଣାବଳୀ,
ଆପେ ପରଚଣ୍ଡ ଆଶୁଗରେ ଛାଇ
ଦେଉଥିଲେ ରଣସ୍ଥଳୀ ।
ଏହିରୂପେ ବେନ୍ତୁଁ ହେଲ ଲାଗିଗଲା
ସମର ଭୀଷଣତର,
ଦିଗ ଅନ୍ଧାରିତ ଦିଶୁଥିଲା ଏକା
ଆଶୁଗପୁଞ୍ଜ ମାତର ।

ଥରେ ହୋଇଗଲା ରଣସ୍ଥଳ ଯେମ—
ହରଷଣ ରଙ୍ଗାଳୟ,
ଗାଉଥିଲେ ଗୀତ ଗଜ-ବାଜିଗଣେ
ଉଚ୍ଚେ କରି ତାନ ଲୟ ।

ବାଉଥିଲେ ଧନୁ— ବୀଣା ବୀରଗଣେ
କବନ୍ଧର ହୁଏ ନାଟ,
ଦେଖୁଥିଲେ ତାହା ଦିଗଙ୍ଗନାମାନେ
ଘେନି ବେନିକୂଳ ଥାଟ ।

ଥରେ ହେଉଥାଏ ପ୍ରବଳ ବାହିନୀ
ଭୟାବହ ପ୍ରବାହିନୀ,

ବାରଣସଂହୃତ ଶିଳାବର୍ଷଣରେ
ଘୋର ହୁଙ୍କାରଦାୟିନୀ ।
ହୁଂକାର ଗର୍ଜିତ ଘନ ରକ୍ତସ୍ରୋତ
ଫେନିଲ ଶିରସ୍ତ୍ରଜାଲେ,
ଚଞ୍ଚଳ ଭାବରେ ଖେଳୁଥିଲେ ତହିଁ
ଅସି-ଛୁରି-ମୀନମାଳେ ।

ବୀରଗଣ ଦମ୍ଭେ ତରବାର ଆଗେ
ଅଗ୍ରେ କରି ରୂପ-ତରୀ,
ରିପୁ-ଚଣ୍ଡ ମଧ୍ୟେ ବାହି ନେଉଥିଲେ
ମାର୍ଗଣ-କ୍ଷେପଣୀ ଧରି ।

ପୁଣି ଅଳ୍ପ ଅଗ୍ରେ ଶର ବୃଷ୍ଟି କଲେ
ଅଗଣିତ ଗଜବୀର,
ଯୁବରାଜଙ୍କର ଗଭୀର ହୃଦୟ
ନ ହୋଇଲା ତିଳେ ଅଧୀର ।

ଆପେ ଛାଡି ଦେଲେ ପ୍ରସ୍ୱାପନ ବାଣ,
ବାଣବର ବେଗେ ଯାଇ,
ସମରବ୍ୟଥିତ ଗଜସେନାବୃନ୍ଦ
ନିଦ୍ରାରେ ଦେଲା ମଜ୍ଜାଇ ।

ନିଦ୍ରା ଭାଙ୍ଗିଲା କେ ସ୍ୟନ୍ଦନ ଉପରେ
କେହୁ ଗଜ-ବାଜି-ସ୍କନ୍ଧେ,
କେ ଅବା ଲୋଟୁଛି— ପ୍ଲାବିତ କୋମଳ
ଧରଣୀତଳେ ସୁଚ୍ଛନ୍ଦେ ।

ରଣ ଜୟ କରି ଯୁବରାଜ କଲେ
ଶଙ୍ଖନାଦ ଘନ ଘନ,

ନାଚିଲେ ତାଙ୍କର        ସୈନିକଜନଙ୍କର
ହୋଇ ହରଷିତ ମନ ।

ଅସ୍ତ୍ର-ପରବଳ        ବିସ୍ମର ନ କର
କ୍ରୋଧବଶ ହେଲେ ଜନ,
ଏହିରୂପେ ମହା—        ସଙ୍କଟ-ସାଗର—
ଗର୍ଭେ ହୁଅନ୍ତି ପତନ ।

କ୍ଷତପ୍ରୀ-ଜଡିତ        ହୋଇ ପଡିଥିଲେ
ସର୍ବ ରାଜସେନାଗଣେ,
ସୁସ୍ଥ ଥିଲେ ଅଜ        ଅକ୍ଳେଶରେ ନାଶ
କରିଥାନ୍ତେ ସେହିକ୍ଷଣେ ।

ବଳବନ୍ତଠାରେ        ବଳବନ୍ତ ସିନା
ପ୍ରକାଶଇ ପରାକ୍ରମ,
ବଳହୀନଠାରେ        ବଳ ଦେଖାଇବା
ନୁହଇ କ୍ଷତ୍ରିୟ ଧର୍ମ ।

ନିଦ୍ରିତ ନିରସ୍ତ୍ର        ଶରଣ-ଆଗତ
ଅବଳା ଭୀତ ବାଳକ,
ଏମାନଙ୍କୁ ବଳେ        ନାଶ କଲେ ଲାଗେ
ବୀରଯଶରେ କଳଙ୍କ ।

ନୀତିପରାୟଣ        ନୀତି ଅବଲମ୍ବି
ରକ୍ଷା କଲେ ପର ଦଳ,
ପ୍ରତିବନ୍ଧକ ନ        ଥିଲେ ହେଁ କୂଳକୁ
ଲଙ୍ଘେ କି ଜଳଧି ଜଳ ?

ମହତ ଜନର        ଦୟା ସବୁଠାରେ
ସମେ ହୁଏ ବିତରିତ,

କର୍ତ୍ତବ୍ୟ ମନ୍ତ୍ରକୁଁ ନ କରଇ ତରୁ
ସୁ ଇଚ୍ଛା ଅପଥାବୃତ ।
ପରଦୁଃଖ ଦେଖି ଦୟାଳୁ ହୃଦୟ
ସହଜରେ ହୁଏ ଦୁଃଖୀ,
ତେଣୁ ରଣକ୍ଲାନ୍ତ ସୈନ୍ୟ ଦଳକୁ
ଛୁଟି ଦେଇ କଲେ ସୁଖୀ ।
ପରେ ପ୍ରପୀଡ଼ିତ ହେଲେ ହେଁ ମହନ୍ତ—
ଭବ ସଦା ଅକର୍କଶ,
ନ ହେଲେ କି ଇକ୍ଷୁ ନିଷ୍ପେଷିତ ହୋଇ
ଢାଳନ୍ତା ମଧୁର ରସ ?
ସୈନ୍ୟ-ସାଗରକୁ ମନ୍ଥି କଉଣଲେ
ରଣବିଶାରଦ ଅଜ,
ହର୍ଷେ ଗଲେ କଲେ ପ୍ରିୟା ସମୀପକୁ
ପଦ୍ମବନ୍ଧୁ ଯେସ୍ନେ ଗଜ ।
କାନ୍ତ ରଣେ ରତ ବୁଝି ନବକାନ୍ତା
ନେତ୍ରୁଁ ବହୁଥିଲା ନୀର,
ନିଶା ଅବସାନେ ଗଗନମଣ୍ଡଳୁଁ
ଝରଇ ଯେସ୍ନେ ଶିଶିର ।
ସମରବିଜୟୀ ପତିଙ୍କି ଅନାଇ
ଲଭିଲେ ଅମୂଲ୍ୟ ସୁଖ,
ପଦ୍ମିନୀ-ଯୁବତୀ ଦର୍ଶନ କଲା କି
ମେଘମୁକ୍ତ ରବି-ମୁଖ ।
ଯୁବଜିକ ପ୍ରିୟା ବଦନକୁ ଚାହିଁ
ବୋଲନ୍ତି, ଗୋ ବିମ୍ବାଧର,

ଦେଖ ଦେଖ ଏବେ ସମରକ୍ଷେତ୍ରକୁ
କଣ୍ଠାଗ୍ର ସ୍ଖଳନ ଢଳ ।
ତୋହ୍ନ ପାଇଁ କେତେ ନୃପତିନନ୍ଦନ
ଦମ୍ଭେ ଆସି କୋଧବଶୁଁ,
ଅତୁଳଦରଶୀ— ପଣେ ପ୍ରାଣ ଦେଲେ
ରଣ-ଯଜ୍ଞେ ହୋଇ ପଶୁ ।
କେତେ କେତେ ସେନା ପତଙ୍ଗମ ହେଲେ
ପ୍ରଦୀପ୍ତ ସମରାନଳେ,
ଏ ବାରତା ପାଇ ପରିଜନେ ତାଙ୍କ
ବୁଡ଼ିଯିବେ ଶୋକ-ଜଳେ ।
କେତେ ନରପତି କୁସୁମରଚିତ
କୋମଳ ପର୍ଯ୍ୟଙ୍କ ଛାଡ଼ି,
ଶିବାଗଣ ସଙ୍ଗେ ଲେହୁତାକ୍ତ ମୁଖେ
ଶୋଇଛନ୍ତି ମୂହୁଁ ମାଡ଼ି ।
ଶୁଣି ଇନ୍ଦୁମତୀ ତଳକୁ ବଦନ
କଲେ ମନ୍ଦ ମନ୍ଦ ହସି,
ଲଜ୍ଜାବଶୁଁ ସଖୀ— ବଦନେ କହିଲେ
କାନ୍ତେ ବଳ ପରଶଂସି ।
ଏହି ରୂପେ ରଘୁ ଛେଦତ ନାକରେ
ଲବଣ ଲଗାଇ ଅଜ,
ବଜେ କଲେ ନିଜ ପୁର ଅଭିମୁଖେ
ଉଡ଼ାଇ ବିଜୟଧ୍ୱଜ ।



# ଉତ୍ତର ଭାଗ



କୁମାର-ବିରହେ ବ୍ୟାକୁଳହୃଦୟେ
ଅଯୋଧ୍ୟାର ରାଜରାଣୀ
ଦୁଃଖେ କହୁଛନ୍ତି ସଖୀ ପାଶେ ସ୍ତୁତ—
ଉଦନ୍ତ କିଛି ନ ଜାଣି ।

ନିଶା ଅବସାନେ ଦେଖିଲି ଗୋ ଆଜି,
ସ୍ୱପ୍ନ ସୁବିସ୍ମୟକର,
ସ୍ମରି ଏତେବେଳେ ତନୁ ଥରେ ଯଥା
ସମୀରେ ରମ୍ଭାପତର ।

ମୃଦୁଳ ବପୁ ମୋ ସୁନ୍ଦ ଆସୁଥିଲା
ଅସ୍ୱେଧ୍ୱ ଶ୍ୱେତ ବାରଣ,
ଢାଳୁଥିଲା ଶିରେ ପବିତ୍ର ଜଳ
ଶ୍ୱେତଚାମର ଧାରଣ ।

ବେଳପାର୍ଶ୍ୱେ ପୁଣି ଧବଳ ଚିଗଲ
ଉଡୁଥିଲା ଫରହର;
ମୋ ସୁନ୍ଦ ଅଙ୍କରେ ଶୋଭା ପାଉଥିଲା
ଶୁକ୍ଳାମ୍ବର ବଧୂବର ।

ବିଶାଳ ବକ୍ଷରେ ଝୁଲୁଥିଲା ସ୍ୱରୁ
ଧବଳ କୁସୁମହାର,
ଲୀଳା ପୁଣ୍ଡରୀକ ଚଳା ହେଉଥିଲା
ହସ୍ତେ ନବ ଅବଳାର ।

ଣ୍ଠରେ ପଡ଼ିଥିଲା ବିଦ୍ୟାଧର କର—
ବିମୁକ୍ତ କୁସୁମସ୍ରଜି,
ସ୍ପୃହା ମୋ ନୟନ— ମୃଗ ଯାଉଥିଲା
ସୁଖ-ସଲିଳରେ ଭାସି ।

ଆଉ ଥରେ ପୁଣି ଦେଖିଲି ଚୌଦିଗେ
ଆକ୍ରମି ନୃପତିଗଣ,
ଏକାକୀ ମୋ ଶିଶୁ— କୁମାର ସଙ୍ଗରେ
କରୁଥିଲେ ଘୋର ରଣ ।

ପର ପରଚଣ୍ଡ ବାଣେ ଫୁଟି ତାର
ସୁକୁମାର କଳେବର,
ଅନର୍ଗଳବାହୀ ରକ୍ତ ପ୍ରବାହରେ
ହୋଇଥିଲା ଜରଜର ।

କାରୁଣ୍ୟ-ସାଗର ଅବାର୍ଯ୍ୟ ତରଙ୍ଗ
ପରମସ୍ୱ ଉଠେ ଖରେ
ଧୈର୍ଯ୍ୟ-ପୋତ ମୋର ଗ୍ରାସିଦେଲା ସଖି,
ଚୂର୍ଣ୍ଣ ଚୂର୍ଣ୍ଣ କ୍ଷଣକରେ ।

ଅକସ୍ମାତେ ମୋର ସୁଷୁପ୍ତି ଭଞ୍ଜନ
' ହୋଇଗଲା ସେହୁକ୍ଷଣି,
ଉଠି ପଲ୍ୟଙ୍କରେ ବସି ଅନାଇଲି
କାହିଁ ସେ କୁମରମଣି ।

ନବ ବିକଶିତ ନୀପ ପ୍ରାୟେ ଚନ୍ଦ୍ର
ହୋଇଥିଲା କଣ୍ଟକିତ,
ସ୍ୱିନ୍ନ ହେଲା ପୁଣି ନିଶାନ୍ତେ ଯେସନ
ପଦ୍ମିନୀ ଶିଶିରସିକ୍ତ ।

ସେଦିନ ବେଳରୁ   ନୟନରେ ଆଉ
ନିଦ୍ରା ତ ଆସିଲା ନାହିଁ,
କୁମାର ପ୍ରସଙ୍ଗ   ଭାବନାରେ ଏକା
ବଞ୍ଚିବସି ଗଲା ପାଇଁ ।
ଅଦ୍ଭୁତ ସ୍ୱପନ   ଦେଖିଲା ବେଳୁ ମୋ
ମନ ହେଉଅଛି ଘାଣ୍ଟି,
ଶରବନ୍ଧ-ଚନ୍ଦ୍ର   କୁମାରକୁ ସ୍ମରି
ହୃଦୟ ଯାଉଛି ଫାଟି ।
କେମନ୍ତେ ଦେଖିବି   ଜୀବଜୀବନର
ଅମଳ କମଳ-ମୁଖ,
କେବେ ଆସି ମୋର   ନୟନପ୍ରତିମା
ଦୂରେ ଫେଡ଼ିଦେବ ଦୁଃଖ ।
ନିସର୍ଗ-ସୁନ୍ଦର   ପୁତ୍ର ମୋ ଯାଇଛି
ସ୍ୱୟମ୍ବରସମ୍ମିଳନ,
ରାଜାଗଣ ସବୁ   ଅସୂୟାରେ ଅବା
ବାଞ୍ଛା କଲେ ଅମଙ୍ଗଳ ।
ଅଳପ ବୟସ   ସରଳ ସ୍ୱଭାବ
ଅଟଇ ମୋର କୁମାର,
ରାଜାଗଣେ ତାରେ   କପଟ କରିଲେ
କେମନ୍ତେ ହୋଇବ ପାର ।
ଅନାଥର ନାଥ   ଅରକ୍ଷ-ରକ୍ଷକ
ଅଟେ ପ୍ରଭୁ ଚକ୍ରଧର,
ତବ ଅନୁବଳେ   ଅସହାୟ ମୋର
ନନ୍ଦନକୁ ରକ୍ଷା କର ।

ଏହିରୂପେ ଖିନ୍ନ— ହୃଦୟା ମହିଷୀ
ମିତ୍ରସଖୀ ପାଶେ କାନ୍ଧ,
ନିଦାଘ-ଶଇଳ ପ୍ରାୟେ ବସିଥିଲେ
ହୃଦୟରେ ତାପ ବହି ।

ବଦନମଣ୍ଡଳ ଥୋଇଥିଲେ ଧୀର
ଦେଇ ଦକ୍ଷିଣେତର କରେ,
ପର୍ଯ୍ୟୁଷିତ ଶ୍ଳଥ— କୁନ୍ଦ କୁସୁମ କି
ଟଳିଅଛି ପଲ୍ଲବରେ ।

ସଭା-ମଣ୍ଡପରେ ସଭାସଦବୃନ୍ଦ
ଘେନି ରଘୁ ନରବର,
ବସିଥିଲେ, ଏଥି— କାଳେ ଉପଗତ
ଯୁବରାଜଙ୍କ ଚର ।

ନତମସ୍ତକରେ କର ଯୋଡ଼ି ବାନ୍ଧି
ମହାରାଜା ପଦ୍ମପାଦ,
ଆନନ୍ଦ ଗଦ୍‌ଗଦ— ବଚନେ କହିଲା
ବିଦର୍ଭପୁର ସମ୍ବାଦ ।

ଦେବ ! ଦେବ ମହିମା ରାଜରାଜେଶ୍ୱର
ଶୁଭେ ହେଲା ସ୍ୱୟମ୍ବର,
ତ୍ରିଲୋକ ସୁନ୍ଦରୀ ବରମାଲ୍ୟ ଦେଲେ
ଗଳେ ଯୁବରାଜଙ୍କର ।

ଆସିଥିଲେ କେତେ କେତେ ନରପତି
ଶୁଷ୍କ କରିଦେଲେ ମୁଖ,
ନ ଲଭି ବିଦର୍ଭ— ଗଗନ-ସୁନ୍ଦର—
ଚନ୍ଦ୍ରମା-କୃପା-ମୟୂଖ ।

ମହା ଆଡ଼ମ୍ବରେ    ଉଦ୍‌ବାହୁ ବିଧାନ
ଶୁଭେ କରି ସମାପନ,
ବଧୂରତ୍ନ ଘେନି    ଯୁବରାଜ ପୁରେ
କରିଥିଲେ ଆଗମନ ।

ସହି ନ ପାରି ତା    ଦଳବଦ୍ଧ ହୋଇ
ମତ୍ସରୀ ନୃପତି ସର୍ବେ,
ଅସି କୁମାରଙ୍କୁ    ପଥେ ଅଟକିଲେ
ଯୁଯୁତ୍ସାରେ ମହାଗର୍ବେ ।

ଏକା ଯୁବରାଜ—    ହୃଷ୍ଟେ ମହାରଣେ
ହାରିଲେ ରାଜାସକଳ,
ମୃଗରାଜଶିଶୁ    ସଙ୍ଗେ ରଣ କଲେ
ଜିଣିବେ କି ଛାଗପଲ ?

ସେମାନଙ୍କ ଶିରେ    ବାମ ପାଦ ଦେଇ
ପରତାପୀ ଯୁବରାଜ
ବିଜେ କରୁଛନ୍ତି,    ଜାହ୍ନବୀକୂଳରେ
ତମ୍ବୁ ରହିଥିବ ଆଜ ।

ଏ ବାରତା ଶୁଣି    ରଘୁ ନୃପମଣି
ଲଭିଲେ ମୁଦ ଅପାର,
ଅକସ୍ମାତେ କେବା    ଶ୍ରୁତିଯୁଗଳରେ
ଢାଳିଦେଲା ସୁଧାଧାର ।

ଅମାତ୍ୟଗଣଙ୍କୁ    ଆଜ୍ଞା ଦେଇ ବେଗେ
ନଗର ମଣ୍ଡନ ପାଇଁ,
ରାଣୀଙ୍କୁ କହିଲେ    ଶୁଭସମାଚାର
ଅନ୍ତର୍ଭବନକୁ ଯାଇ ।

ସୁଖ-ସୌଭାଗ୍ୟ ସୀମା ନ ରହିଲା ତାହା
ଶୁଣି ମହାରାଣୀଙ୍କର,
ଆତପତାପିତ ଜନ ଶିରେ କିବା
ପଡ଼ିଲା ଚିର-ନିର୍ଝର ।

ସେ ବାରତା ପୁଣି ବିଘୋଷିତ ହେଲା
ନଗରେ ଘାଟି କି ବାଟି,
ପୁରବାସୀଙ୍କର ଆନନ୍ଦରେ ଅଉ
ଇୟତ୍ତା ରହିଲା ନାହିଁ ।

ଅଯୋଧ୍ୟା ନଗର ହୋଇଗଲା ସ୍ୱଚ୍ଛ
ଆନନ୍ଦ-କୌମୁଦୀମୟ,
ସମସ୍ତଙ୍କ ମୁଖେ ବିଘୋଷିତ ହେଲା
ଜୟ ଯୁବରାଜ ଜୟ ।

ଏ ବାରତା ଶୁଣି ସାମନ୍ତସକଳ
ମହାଡ଼ମ୍ବର ଦେଖାଇ,
ସମବେତ ହୋଇ ଗଲେ କୁମାରଙ୍କ
ପାଖେଟି ଆଣିବା ପାଇଁ ।

ଆଗତ ସାମନ୍ତ— ମଣ୍ଡଳେ କୁମାର
ହୋଇଣ ଅଭିନନ୍ଦିତ,
ସାମରିକ କଥା କହି କହି ତାଙ୍କୁ
ପୁରେ ହେଲେ ବିରାଜିତ ।

ପୁରବାସୀଙ୍କର ନୟନରେ ଦେଇ
ସୁଦୁର୍ଲଭ ଆହ୍ଲାଦ,
ବଧୂ ସଙ୍ଗେ ଯାଇ ଭକ୍ତିରେ ବନ୍ଦିଲେ
ଜନକ ଜନନୀ ପାଦ ।

ନବବଧୂସଙ୍ଗୀ କୁମାରଙ୍କୁ ଦେଖି
ରାଜାରାଣୀ ହର୍ଷଭର,
ପୌର୍ଣ୍ଣମାସ ଶୋଭା ଚନ୍ଦ୍ରମାମଣ୍ଡଳ
ଦର୍ଶନେ ଯଥା ସାଗର ।

କେତେ କାଳ ପରେ କୁମାରଙ୍କୁ ରାଜା
ରାଜ୍ୟ କରି ସମର୍ପଣ,
ଆପେ ବାନପ୍ରସ୍ଥ ଧର୍ମ ଅବଲମ୍ବି
ସ୍ୱର୍ଗଲୋକେ କଲେ ଗମନ ।

ଅଜ ବନ୍ଧୁ ହେଲେ କନକ-ପ୍ରଦୀପ
ଅଖଣ୍ଡ ମେଦିନୀ ଉପର,
ବିଦ୍ୟା-ଅଳଙ୍କୃତ ହୃଦେ ନ ରଖିଲେ
ତିଳେ ରାଜଅହଙ୍କାର ।

ଅପକ୍ଷପାତରେ ଅପତ୍ୟ ସ୍ନେହରେ
ପରଜାମଣ୍ଡଳ ପାଳି,
ପ୍ରଚଣ୍ଡପ୍ରତାପ— ବୈଶ୍ୱାନରେ ରିପୁ—
ତୃଣରାଶି ଦେଲେ ଜାଳି ।

ଅଖଣ୍ଡିତ ନ୍ୟାୟ ସୁଧାକର ସୁଧା—
ଧବଳ ଚନ୍ଦ୍ କାଜାଳ,
ରାଜ୍ୟରୁ ତାଙ୍କର କରୁଥିଲା ଦୂର
ଅନୀତି-ତିମିରମାଳ ।

ପରଶ୍ରୀକାତର କଣ୍ଟକପଙ୍କର
ପର ଛିଦ୍ରକଥାମାନ,
କର୍ଣ୍ଣ-ପଥେ ପଶି ପାରୁ ତ ନ ଥିଲେ
ହୃଦେ କି ପାଇବେ ସ୍ଥାନ ?

ଦୁଃଖୀ ପ୍ରଜାଙ୍କର    ଦୁଃଖ-ଜର୍ଜରିତ
ପ୍ରାଣୀରମାନ ତୃପତି,
ଦୟା-ରସପୂର୍ଣ୍ଣ    ହୃଦ-ପ୍ରାସାଦରେ
ହେଉଥାଏ ନିନାଦିତ ।

ପ୍ରଜା-ଉପକାର    କାରଣେ ସଞ୍ଚିତ
ଭଣ୍ଡାରଟି ଅଜଙ୍କର,
ବଞ୍ଚକ ବଞ୍ଚନା—    କଥାରେ ନ ଯାଏ
କପର୍ଦ୍ଦ ଏକମାତର ।

ଭୋଗାସକ୍ତ ନୋହି    ସଦା ଜାଗରିତ
ପ୍ରଜାଙ୍କ ହିତସାଧନେ,
ପ୍ରଜା-ସୁଖ ଦେଖି    ଅପେ ମହାସୁଖୀ
ହେଉଥିଲେ ସ୍ୱଚ୍ଛମନେ ।

ରଘୁ-ବିରଚିତ    ରଘୁସୁଶାସନ—
ପାଳିତ ପରଜାଗଣ,
ଅଜ ରାଜତ୍ୱରେ    ରଘୁଙ୍କ ବିରହ
କରିଦେଲେ ବିସ୍ମରଣ ।

ସର୍ବେ ମୁକ୍ତକଣ୍ଠେ    ଘୋଷୁଥାନ୍ତି ସଦା
ଅଜଙ୍କ ନିର୍ମଳ ଯଶ,
ନିନ୍ଦୁଥିଲେ ଏକା    ଆଶ୍ରୟାଭିନରୁ
ଆଲସ୍ୟ ସର୍ବ ରାକ୍ଷସ ।

ଲମ୍ପଠ୍ୟ ଚଉର୍ଯ୍ୟ    ଆଦି ଶ୍ୱାନବୃତ୍ତି
କୃତ୍ରିମ ରୂପ ଦେଖାଇ,
ଅଜ ରାଜ୍ୟେ ଜନ—    ମାନସକୁ କେବେ
ଭୁଲାଇ ପାରନ୍ତି ନାହିଁ ।

ଇନ୍ଦୁମତୀଠାରେ ଅଟଳ ସୁସ୍ନେହ
ଅଜ କର ସଂସ୍ଥାପନ,
ଦମ୍ପତି-ପ୍ରଣୟ— ବିଳାସରେ ସୁଖେ
ସମୟ କଲେ ଯାପନ ।

କେତେକାଳ ପରେ ଇନ୍ଦୁମତୀଙ୍କର
ହୋଇଣ ଗର୍ଭସଞ୍ଚାର,
ଯଥାସମୟରେ ଜାତ ହେଲେ ଏକ
ସୁନ୍ଦର ନବ କୁମାର ।

ଦଶଦିଶେ ରଥ ଗମିବ ଏହାର
ରାଜା ଏହା ଭାବି ମନେ,
ଦଶରଥ ନାମେ ଖ୍ୟାତ ହେଉ ସୁତ
ବୋଇଲେ ବିଶ୍ୱଭୁବନେ ।

ଶୁକ୍ଳେ ଶଶିକଳା ପ୍ରାୟେ ଦିନୁଁ ଦିନ
କୁମାର ହେଲେ ବର୍ଦ୍ଧିତ,
ବୃଦ୍ଧି ହେଉଥାନ୍ତି ଜନକ ଜନନୀ
ଅନ୍ତଶନ୍ଧୁ ଆନନ୍ଦିତ ।

ଧରଣୀ-ରାଣୀର ସେବା ଅର୍ଥେ ଆସି
ବସନ୍ତ ପ୍ରବେଶ ହେଲା,
ଲୋଭିତ କୋମଳ ପଲ୍ଲବ-ଦୁକୂଳେ
ଆସ ତନୁ ମଣ୍ଡିଦେଲା ।

ଲଲାଟରେ ଲତା ଅଳକାବଳୀ କି
ଅତି ଯତନରେ ଆଞ୍ଜି,
ମଣ୍ଡିଦେଲା ଶିରେ ନବ ବିକଶିତ
ମଞ୍ଜୁଳ କୁସୁମରାଜି ।

ରଙ୍ଗିଣୀରେ ଧଏ     ଲମ୍ବାଇ ହୃଦୟେ
ହେମବନ୍ଧ-ମୋତିମାଳୀ,
କର ପ୍ରସାରି ଯା     ହରି ନେଉଥାନ୍ତି
ପ୍ରଭାତରେ କରମାଳୀ ।
ଦକ୍ଷିଣସାଗର—     ତରଙ୍ଗ-ଶୀକର—
ସିକ୍ତ-ଶୀତ-ମୃଦୁ-ବାତେ,
ମଳୟ-ଶଇଳୁ     ସୁଗନ୍ଧ କି ହରି
ବହୁଥାଏ ମନ୍ଦଭାବେ ।
ଗାଇଲେ ସଙ୍ଗୀତ     ମଧୁବ୍ରତ ମଧୁ—
କଣ୍ଠେ ମଧୁରସ୍ୱରେ,
ବନ ଉପବନ     ମଧୁରିତ ହେଲା
କଳକଣ୍ଠ କଳସ୍ୱରେ ।
ମହୀପତି ଅଜ     ମହୀ-ମଣ୍ଡଳର
କମନୀୟ ଛବି ବହି,
ମହୀ-ରତ୍ନହାର     ପ୍ରିୟା ସଙ୍ଗେ ଗଲେ
ଉଦ୍ୟାନ-ବିହାର ପାଇଁ ।
ପ୍ରେମାଳାପେ ଭ୍ରମି     ଭ୍ରମୁ ସେ ଦମ୍ପତି
ପୁଷ୍ପବନେ କୁତୂହଳେ,
ପୁଷ୍ପହାର ଏକ     ଗଗନୁଁ ପଡ଼ିଲା
ଇନ୍ଦୁମତୀ ବକ୍ଷଃସ୍ଥଳେ ।
ସେ ଦିବ୍ୟ କୁସୁମ—     ହାର ଦରଶନ
ମାତ୍ରେ ଇନ୍ଦୁମତୀଙ୍କର,
ପ୍ରାଣ-ବିହଙ୍ଗମ     ଉଡ଼ିଗଲା, ତନୁ
ପଡ଼ିଲା ଧରା ଉପର ।

ଛିନ୍ନମୂଳ ତରୁ ପସ୍ୱେୟ ଭୂମିରେ
ପଡ଼ିବାରୁ ପ୍ରିୟ ଜାୟା,
ଜ୍ଞାନଶୂନ୍ୟ ହୋଇ ପଡ଼ିଲେ ନୃପତି
କାୟା ସଙ୍ଗେ ଯଥା ଛାୟା ।

କିଛିକ୍ଷଣେ ଜ୍ଞାନ ଲଭି ନରପତି
ପାରିଷଦ ଯତନରେ,
ସନ୍ତ୍ରସ୍ତେ ଦେଖିଲେ, ଜ୍ଞାନ ନାହିଁ ପ୍ରାଣ—
ସଙ୍ଗିନୀ ଅପଘନରେ ।

ଝିଁଟିକନ୍ୟାଟିକ— ତନୁ ଦିଶୁଅଛି
ନିଷ୍ପ୍ରଭ ନିରଶ୍ୱସ୍ୱ,
ଅକସ୍ମାତେ କିବା ହୋଇଗଲା ହେମ—
ପ୍ରତିମା ପାରଦମୟ ।

ସସମ୍ଭ୍ରମେ ଉରେ କର ପକାଇଲେ
ଲାଗିଲା ଅତି ଶୀତଳ,
ଅନାବୃତ ସ୍ଥାନେ ଥିଲେ ଯଥା ଶୀତ
ନିଶାନ୍ତେ ଲୌହଶାବଳ ।

ଦେଖିଲେ ବଦନ— ମଣ୍ଡିଲେ ନାହିଁ ତ
ପୂର୍ବତନ ସ୍ମିତଭାବ,
ମୁଦ୍ରିତ ଖଞ୍ଜନ— ଗଞ୍ଜନ ନୟନ
ଗଣ୍ଡେ ଭାଲ ପାଣ୍ଡୁରାଭ ।

ନାସିକାରେ କର ନିବେଶି ଦେଖିଲେ
ନ ଆସଇ ପ୍ରାଣବାୟୁ,
କୋଳେ ଧରି ଉଠେ ବିଳପିଲେ ଶୋକ
ସମ୍ଭରି ନ ପାରି ଆଉ ।

ଅହା ବସ୍ତନରେ ସରଳ-କୋମଳ—
ହୃଦୟଂ ସୁଦସ୍ଯାବତ !
ଛାଡ଼ିଗଲୁ କେଉଁ ଅପରାଧ ଦେଖି
ହୋଇଣ ନିଷ୍ଠୁରମତି ।

କେତେ ଅପରାଧ କରୁ ସଖି ! ଦିନେ
ଦେଖି ନାହୁଁ ତୋର ମାନ,
- ଦିନେ ତୋ ମୁଖରୁ କର୍କଶ ବଚନ
ପାଇ ନାହିଁ ମୋର କାନ ।

କଳନାଦୀ-ବୀଣା— ଗର୍ବଖର୍ବକର
ବଚନ ନ କହୁ ପଦେ,
ଚଲୁ ନମସ୍କାର— ଦେଇ ଶୋକମୟ
ଦୁସ୍ତର ଘୋର ବିପଦେ ।

ଦସ୍ଯା ଉପାଦାନେ ଗଢ଼ା ହୋଇଅଛି
ପ୍ରିୟେ ତବ କଳେବର,
ପ୍ରେମ-ରସାଣରେ ରସାଣି ଦେଇଛି
ତଦୁପରି ବେଦବର ।

କଠିନ ହୃଦୟ ଜାଣି ଅବା ମୋତେ
ହୋଇଅଛୁ ବିରାଗିଣୀ,
କଠିନ ହେଲେ ହେଁ କୁଳଶଳୁ କେବେ
ଛାଡ଼ଇ କି ସୌଦାମିନୀ ?

ଉଠ ଉଠ ଅରେ ପଙ୍କଜନୟନ,
ନେତ୍ର ଉନ୍ମୀଳନ କର,
ନବୀନ ଦୁଃସହ ସନ୍ତାପକୁ ମୋର
ପୀୟୁଷବୃଷ୍ଟିରେ ହର ।

ବାନ୍ଧବ ! ତୋ ବନା ଗାଢ ତମୋମୟ
ଦୃଶ୍ୟ ହେଉଛି ଧରଣୀ,
ବିଦ୍ୟୁତପ୍ରଭାହୀନ ଘନ ଘନାଚ୍ଛନ୍ନ
ଯେମନ୍ତ ଦର୍ଶ ରଜନୀ ।

ଘନପଲ୍ଲବିତ ଅନ୍ଧକାର ବନ
ସୁଶୀତଳ ଛାୟାପଥ,
ରବି-ରଶ୍ମିକଣା ପଡ଼ି ଦାଣ୍ଡେ ଯହିଁ
ନୀଳନଭେ ତାରାବତ ।

ତରୁଗଣ ଯହିଁ ପୁଷ୍ପିତ ମାଧବୀ
ଲତିକାରେ ଆଲିଙ୍ଗିତ,
ହୋଇ ସୁବାସରେ ଚଉଦିଗ ଭୂମି
କରୁଥାଇ ସୁରଭିତ ।

ଝିଙ୍କାରିଏ ବସି ରବୁଥାନ୍ତି ଯହି
ଅଚ୍ଛିନ୍ନ ଗମ୍ଭୀର ସ୍ୱରେ,
କଲକଣ୍ଠ-କୁଳ କଳକଳ ଧ୍ୱନି
ଯହିଁ ମନ ମୁଗ୍ଧ କରେ ।

ଲାଙ୍ଗୁଳ ହଲାଇ ଗୁଣ୍ଡୁଚିଏ ଯହିଁ
ନାଚୁଥାନ୍ତି ପ୍ରମୋଦରେ,
ଦୂରେ ଡାଳେ ବସି କଳ୍ପଲପାଖୀଏ
ରଡ଼ୁଥାନ୍ତି ଥରେ ଥରେ ।

ମଧ୍ୟାହ୍ନେ ତୋହର ସୁକୋମଳ କର
ଧରି ତହିଁ ବୁଲିବାର,
ସୁସ୍ନିଗ୍ଧ ମାଧବୀ— ମଣ୍ଡପରେ ବସି
ପ୍ରେମାଳାପ କରିବାର,

କୌତୁକେ କୁସୁମ ବସ୍ତାବସ୍ତି ହୋଇ
ପ୍ରେମଖେଳ ଖେଳିବାର,
ସ୍ମୃତିପଥେ ପଡ଼ି ହୃଦୟ କରତ
ହେଉଅଛି ବାରମ୍ବାର ।
ଅତୈଳପୂରିତ ରତ୍ନଦୀପ ତହିଁ
କରଇ ତିମିର ନାଶ,
ଉଠୁଥାଏ ଯେଉଁ ପୁରେ ଅବିରତେ
ଅଗୁରୁ ଧୂପର ବାସ ।
ତହିଁ ଗଜଦନ୍ତ ନିର୍ମିତ ପଲ୍ୟଙ୍କ
ଦୁଗ୍ଧ ଫେନନିଭ ଶଯ୍ୟା,
ଶରଚ୍ଚନ୍ଦ୍ରୋପମ ଉପାଧାନ ଦେଇ
ହୋଇଥାଏ ଯାହା ସଜ୍ଜା ।
ତାହା ତେଜି ଆଜ ଶ୍ମଶାନେ ଶୋଇଲୁ
ପ୍ରଜ୍ୱଳିତ ଚିତାକୋଳେ,
ସେ ଭୀଷଣ ଛବି ପ୍ରତିବିମ୍ବ ଆସି
ନାଚୁଥିବ ମୋର ଡୋଳେ ।
ଏଥୁ ବଳି ବଣ୍ଟେ ହୃଦ-ବିଦାରଣୀ
କି କଥା ଅଛି ଅଧିକ
ଏତେବେଳଯାଏ ଫାଟି ନାହିଁ ମୋର
ପାଷାଣ-ହୃଦୟ ଧିକ ।
କେ ଗାଇବ ବୀଣା— ଝଙ୍କାର ମିଶ୍ରିତ
ପ୍ରେମ-ସୁଧାମୟ ଗୀତ ?
କାହା ସଙ୍ଗେ ବସି ଉଲ୍ଲାସେ କରିବ
ମନୋହର ସୁସଙ୍ଗୀତ ?

ସକଳ ବିପତ୍ତି— ବିଳାସରେ ମୋତେ
ଦିଆଇ ତୁ ଜଳାଞ୍ଜଳି,
ଅତ୍ୟନ୍ତ ଗଭୀର ଦୁଃଖ-କୂପଗର୍ଭେ
ପେଲିଦେଇ ଗଲୁ ଚଳି ।

ଧୁମକର କଳା— ସୁକୋମଳ ରୁଚି
ଅଳ୍ପ ବୟସ କୁମର,
କେତେ ବ୍ୟାକୁଳିତ ହେଉଥାଉ ତଳେ
କୋଳରୁ ହେଲେ ଅନ୍ତର ।

ଆଜି ତାଙ୍କୁ ଶୋକ— ସ୍ରୋତରେ ଭସାଇ
ଛାଡିଗଲୁ ସଖି କାହିଁ !
ଅଭିନ୍ନହୃଦୟା ସଖୀଗଣଠାରୁ
ମେଲାଣି ତ ହୋଇ ନାହିଁ ।

ଫୁଲମାଳ ଛୁହିଁ ବୋଲନ୍ତି, ଅହା କି
ଅଦ୍ଭୁତ ମୋର କପାଳେ,
ପ୍ରିୟ ଗଳାହାର ଗଳା କାଟିବାର
ଶୁଣା କାହିଁ କେଉଁ କାଳେ ?

ଏହିପରି ଏକ ପୁଷ୍ପମାଳ ମୋତେ
ପ୍ରିୟା ସଙ୍ଗେ କଲା ଯୋଗ,
ଏହି ପୁଷ୍ପମାଳ ଆଜି ମୋହଠାରୁ
ପ୍ରିୟାଙ୍କୁ କଲା ବିଯୋଗ ।

ଏଣୁ ବିଚାରଇଁ ସୌଭାଗ୍ୟ ସମୟେ
ସମ୍ପଦରେ ଯାକୁ ଗଣି,
ଅଭାଗ୍ୟ ସମୟେ ସେହି ପୁଣି ହୁଏ
ସବୁ ବିପଦର ଖଣି ।

ଜଳରୁ ଜନମି ପଦ୍ମିନୀ ସୁନ୍ଦରୀ
ଥରେ ଚହଟାଏ ବାସ,
ସମୟରେ ପୁଣି ସେହି ଜଳକଣା
ପଦ୍ମିନୀକି କରେ ନାଶ ।

ଅବା କାନ୍ତା ମୋର ରାଜେନ୍ଦ୍ର-ନନ୍ଦନୀ
ଅଟେ ଅତି ସୁକୁମାରୀ,
ପୁଷ୍ପମାଳ ତାକୁ କଠିନ ହେବାରୁ
ଜୀବନ ଦେଲା ସଂହାରି ।

ରାଜା ଶୋକ ସହି ସଘନେ କାନ୍ଦିଲେ
ପାର୍ଶ୍ୱଚର ଭୃତ୍ୟଗଣ,
ପ୍ରତିଧ୍ୱନି-ଛଳେ ଉଦ୍ୟାନ ହିଁ ତହିଁ
ଗମ୍ଭୀରେ କଲା ରୋଦନ ।

କ୍ଷଣକ ମଧ୍ୟରେ ଅଯୋଧ୍ୟା ନଗରୀ
ବୁଡିଗଲା ଘୋର ଦୁଃଖେ,
ହାହାକାର ଧ୍ୱନି ଉଚ୍ଚାରିତ ହେଲା
ଅବସନ୍ନେ ଜନମୁଖେ ।

ରାଜମହିଷୀଙ୍କ ନିଧନ-ବାରତା
ଶୁଣି ରାଜବନ୍ଧୁ ଜନେ,
ରାଜା ସମୀପରେ ଉପସ୍ଥିତ ହେଲେ
ସତ୍ୱରେ ବିଷଣ୍ଣ ମନେ ।

ଇନ୍ଦୁମତୀଙ୍କର ମୃତ କଳେବର
ରାଜାଙ୍କ କୋଳରୁ ବଳେ
ନେଇ ଦାହ ଦେଲେ ଚନ୍ଦନସମିଧ—
ବିରଚିତ ଚିତାନଳେ ।

ଉଦ୍ୟାନରେ ରହି ପ୍ରିୟା ପ୍ରେତକାର୍ଯ୍ୟ
ଯଥାବିଧି ସମାପନ,
ତବ ନରପତି ବିଷଣ୍ଣ ବଦନେ
ପୁରକୁ କଲେ ଗମନ ।
ମଣି ହରାଇଲା ଫଣୀ ପ୍ରାୟେ ଦୁଃଖେ
ନିଭୃତ ମନ୍ଦିରେ ରହି,
ରମଣୀ-ବିରହ— ଅନଳ-ଶିଖାରେ
ତନୁ ଦେଉଥାନ୍ତି ଦହି ।
ଆହାର ବିହାର ରାଜକାର୍ଯ୍ୟ ଆଦି
ମଣିଲେ ଗରଳବତ,
ନିବିଡ଼ ନିର୍ଜ୍ଜନ କାନନ ପରାୟେ
ପ୍ରତୀତ ହେଲା ଜଗତ ।

ରାଜକୁଳଗୁରୁ ବଶିଷ୍ଠ ମହର୍ଷି
ସିଦ୍ଧତପା ମହାଜନ,
ଜ୍ଞାନ-ଚକ୍ଷୁ ଯାର ଉନ୍ମୀଳିତ ହେଲେ
କରତଳେ ତ୍ରିଭୁବନ ।
ତ୍ରିକାଳ ଘଟନା ଦର୍ପଣେ ଚିତ୍ରିତ
ହୋଇଥାଏ କରପଦ୍ମେ,
ଅବଗତ ହେଲେ ସକଳ ଘଟଣା
ଘଟିଲା ଯା ରାଜସଦ୍ମେ ।
ନୃପତିହୃଦୟ— ଅଚ୍ଛାଦିତ ମୋହ—
ତମସ ନାଶନ ପାଇଁ,
ଋଷିକୁଳରବି— ରଷ୍ଟ ଛଳେ ଜଣେ
ଶିଷ୍ୟଙ୍କୁ ଦେଲେ ପଠାଇ ।

ଋଷିଶିଷ୍ୟ ଆସି ନୃପ ସମୀପରେ
ଯଥାବିଧି ସମାଦୃତ,
ହୋଇ ମହର୍ଷିଙ୍କ ଉପଦେଶାବଳୀ
ସ୍ୱଜନେ କଲେ ବିବୃତ ।

ଯଜ୍ଞରେ ଦୀକ୍ଷିତ ଥିବାରୁ ମହର୍ଷି
ଆମ୍ଭଙ୍କୁ କଲେ ପ୍ରେରଣ,
କହନ୍ତି ଯାହା ଅବହିତଚିତ୍ତେ
ଶ୍ରବଣ କର ସ୍ୱଜନ ।

ଯେରୂପେ ଗଗନ ଗଗନ ସଦୃଶ
ସାଗର ସାଗରୋପମ,
ଅବନୀମଣ୍ଡଳେ ସର୍ବ ସ୍ୱଜନଗଣେ
ତୁମ୍ଭେ ଏକା ତୁମ୍ଭ ସମ ।

ମହୋଦଧି ପ୍ରାୟ ତୁମ୍ଭର ହୃଦୟ
ଅତ୍ୟନ୍ତ ଗମ୍ଭୀର ଧୀର,
ସାଧାରଣ କ୍ଷୋଭ ମୋହ ତାକୁ କର
ପାରନ୍ତି ନାହିଁ ଅସ୍ଥିର ।

ତବେ ଭବିତବ୍ୟ ଅବଶ୍ୟ ଘଟଇ,
ନ ହୁଏ କେବେ ଅନ୍ୟଥା,
ମୃତ ଜନେ ସିନା ତହିଁପାଇଁ ବୃଥା
ହୃଦେ ପୋଷୁଥାନ୍ତି ବ୍ୟଥା ।

ବିଧିବିଧାତବ୍ୟ ବିଷୟେ ନ ବୁଝ
କ୍ଷୋଭ କରିବାର ମନେ,
ପ୍ରାକୃତ ମାନବ ପରାୟେ ଉଚିତ
ନୁହେ ଭବାଦୃଶ ଜନେ ।

ନଦୀପ୍ରବାହରେ ଭସିଯାନ୍ତି ଯିବା
ତଟସ୍ଥିତ ତରୁମାନ,
ପ୍ରବାହ ଉପରେ ପ୍ରବାହ ଆସିଲେ
ଠଲଇ କି ସାନୁମାନ ?

କର୍ମଫଳ ଘେନି ଜନ୍ମ ଲଭୁଛନ୍ତି
ଜୀବଗଣ ବସୁଧାରେ,
ଫଳ ଭୁଞ୍ଜି ସାରି ଯାଉଛନ୍ତି ପୁଣି
କୃତକର୍ମ ଅନୁସାରେ ।

ଜୀବନ-ପ୍ରଦୀପ ଜଳୁଥାଏ ଦେହେ
ଆୟୁସ୍ତୈଳ ଥିବାଯାଏ,
ଆୟୁସ୍ତୈଳ ସବୁ ନିଃଶେଷିତ ହେଲେ
ନିର୍ବାଣ ସେ ହୋଇଯାଏ ।

ଅଚିନ୍ତ୍ୟ ପୁରୁଷ ହସ୍ତେ ଅଛି ସେହି
ତୈଳ ଦେବା ଅଧିକାର,
ଅପକ୍ଷପାତରେ ବଣ୍ଟନ କରନ୍ତି
କର୍ମ ଦେଖି ଯେ ଯାହାର ।

ମର୍ତ୍ତ୍ୟମଣ୍ଡଳରେ ଜନମିଲେ ଜନେ
ଅବଶ୍ୟ ଅଛି ମରଣ,
ସର୍ବଗ୍ରାସୀ କାଳ ପ୍ରତିନିମେଷରେ
କରୁଛି ଆୟୁ ହରଣ ।

ଥିଲେ କେତେ କେତେ ଅମିତତେଜସ୍ୱୀ
ବସୁନ୍ଧରା-ପତିମାନେ,
ନାମ ମାତ୍ର ଅଛି ତନୁ ଯାଇଅଛି
ଭୟଙ୍କର ଶମଶାନେ ।

ତବ ବଂଶେ ଥିଲେ ନୃପତି-ମୁକୁଟ—
ମଣି ପୁରଞ୍ଜୟ ନାମେ,
ମରତ୍ଲୋକ ଲଙ୍ଘି ବ୍ୟାପିଥିଲା ତାଙ୍କ
କୀରତି ଅମରଧାମେ ।

ସେହୁ ଯଶୋଧନ ବୀରଗଣାଗ୍ରଣୀ
ଅଛି ଏ ମର୍ତ୍ତ୍ୟରେ କାହିଁ ?
କାଳର ଅଜେୟ ପରାକ୍ରମକୁ ସେ
ଲଙ୍ଘି ତ ପାରିଲେ ନାହିଁ ।

ତୁମ୍ଭ ପିତାମହ ଦିଲୀପ ଭୂପତି,
ପିତା ରଘୁ ମହାରଥ,
ଦୋର୍ଦ୍ଦଣ୍ଡକୁ ଯାର ମଘବା ଶଙ୍କଇ
ସେହୁ ଅଛନ୍ତି କି ଅଜ ?

ଚିରସ୍ଥାୟୀ ନୁହେ ଶରୀର-ପାଦପ
ଭବ-ତରଙ୍ଗିଣୀତୀରେ,
ପ୍ରାଣ-ମୂଳମାଟି ଧୌତ ହୋଇଗଲେ
ଭାସିଯାଏ କାଳ-ନୀରେ ।

କେହୁ ତ କାହାର ନୁହନ୍ତି ସ୍ୱଜନ
ମାୟାମୟ ଭବ-ହାଟେ,
ଆପଣା ଆପଣା କଉଡ଼ି ସରିଲେ
ଫେରୁଛନ୍ତି ନିଜ ବାଟେ ।

ତୁମ୍ଭେ ଯାହାପାଇଁ ବିଳାପ କରୁଛ
ତୁମ୍ଭଙ୍କୁ ସେ ଭୁଲି ମନୁ,
ମହାପ୍ରମୋଦରେ ସୁରପୁରେ ଅଛି
ଇନ୍ଦ୍ର ଅପସରୀ ତନୁ ।

ଦୁଷ୍କର ତପସ୍ୟା  କରୁଥିଲେ ବନେ
ମହାତପା ତୃଣବିନ୍ଦୁ,
ଇନ୍ଦ୍ର ଆଦେଶରେ  ହରିଣୀ ନାମରେ
ଆସି ଏକ ସୁରବଧୂ,
ତପୋଭଙ୍ଗ ପାଇଁ  ଅନଙ୍ଗବିଳାସ
ଦେଖାଇଲା ମୁନି ଆଗେ,
ବିଲୋକି ମହର୍ଷି  "ମର୍ତ୍ତ୍ୟରେ ମାନୁଷୀ
ହୁଅ ତୁ" ବୋଇଲେ ରାଗେ ।

ମୁନି ଅଭିଶାପେ  ପଡ଼ିଲା କାନ୍ଦିଣ
ଅତି ଦୁଃଖର ବିପଦେ,
କୃତାଞ୍ଜଳି ହୋଇ  ପ୍ରତିକାର ପାଇଁ
ଜଣାଇଲା ମୁନିପଦେ ।

କୂର୍ମଙ୍କର ପଦ  ଇତର ଜନଙ୍କ
ଖଣେ ଖଣେ ବାହାରଇ,
ଗଜଦନ୍ତ ପରି  ମହତ ବଚନ
ବାହାରିଲେ ନ ଘୁଞ୍ଚଇ ।

ମୁନିଙ୍କ ହୃଦୟ—  ଅଭ୍ୟନ୍ତର ସଦା
ସ୍ୱାଭାବିକ ସୁକୋମଳ,
ବହିରାବରଣ  ମାତ୍ରକେ କଠିନ
ଯଥା ନାରିକେଳ ଫଳ ।

ସୁର-ବନିତାର  କାନ୍ଦଣାରେ ହେଲା
ଋଷିଙ୍କ କୃପା ସଞ୍ଚାର,
ସାନୁଗ୍ରହ ଚିତ୍ତେ  କହିଦେଲେ ତାକୁ
ଶାପତ୍ରାଣ ପ୍ରତିକାର ।

ଯେଉଁ ଧନ ତୋର  ଦୃଷ୍ଟିରେ ପଡ଼ିବ
ସ୍ୱର୍ଗୀୟ କୁସୁମ ହାର,
ସେହିକ୍ଷଣି ନିଜ  ଶରୀର ଲଭିବୁ
ଭବାବ୍ଧିରୁ ହୋଇ ପାର ।

ବିକଶିଲୁ ବୃଥା—  କଉଶିକ ବଂଶ—
ସରେ ବାଳା-କୁମୁଦିନୀ,
ଭୁବନ-ଚନ୍ଦ୍ରମା  ହେତୁ ହୋଇଥିଲୁ
ତୁମ୍ଭ ଚିତ୍ତବିନୋଦିନୀ !

ବୁଲୁଥିଲୁ ବେଳେ  ପ୍ରିୟାସଙ୍ଗେ ତୁମ୍ଭେ
ପ୍ରେମପୂର୍ଣ୍ଣ ମନୋରଥେ,
ବୀଣାବିନୋଦିଆ  ଦେବର୍ଷି ନାରଦ
ଯାଉଥିଲେ ସୁରପଥେ ।

ଦୈବଯୋଗେ ବାୟୁ—  ବଳେ ଖସି ତାଙ୍କ
ବୀଣାଗ୍ର-କୁସୁମମାଳା
ଉରେ ପଡ଼ିବାରୁ  ଶାପରୁ ମୁକତି
ଲଭିଅଛି ସୁରବାଳା ।

ତୁମ୍ଭେ ଏବେ ତାକୁ  ଦେଖି ନ ପାରିବ
ସେ ଅବା ଚିହ୍ନିବ କାହିଁ,
ତାହାପାଇଁ ବୃଥା  ଶୋକ କରିବାର
ତୁମ୍ଭ ପ୍ରତି ନ ଯୋଗାଇ ।

ଚଳି କଥା ଗଲି  ସୃଷ୍ଟିପତି ତାହା
ପୋଛିଦିଅ ମହାମନା,
ଗତ କଥା ସ୍ମରି  ଶୋଚନା କରିବା
ନୀତିଶାସ୍ତ୍ରେ ଅଛି ମନା ।

ପ୍ରଜାବତ୍ସଳ ହେ, ପ୍ରଜାରଞ୍ଜନରେ
ନିବେଶିତ କର ମନ,
ଜଗତରେ ଏକା ପ୍ରଜାମାନଙ୍କର
ପରଜା ପରମ ଧନ ।”
ଏରୂପେ ନୃପଙ୍କୁ ନାନା ଉପଦେଶ—
ବାକ୍ୟେ କରି ପ୍ରବୋଧନ,
ମେଲାଣି ହୋଇଣ ବଶିଷ୍ଠଙ୍କ ଶିଷ୍ୟ
ଆଶ୍ରମେ କଲେ ଗମନ ।
ରାଜାଙ୍କ ହୃଦୟ— ପ୍ରାସାଦରେ ଯେଉଁ
ଜ୍ଞାନ-ଦୀପ ଜାଳି ଗଲେ,
ଲିଭିଗଲା ତାହା ଶୋକ-ଜଳ-ସିକ୍ତ
ମୋହ-ପ୍ରଭଞ୍ଜନ-ବଳେ ।
ଶୋକକ୍ଷୀଣତନୁ ନୃପତିଙ୍କି ହେଲା
ଦୁର୍ବହ ମେଦିନୀଭର,
ବୋଧ କଲେ ବିଷ ପରାୟେ ବିଷୟ
ଦୁଃଖମୟ ଏ ସଂସାର ।
କିଛିଦିନ ପରେ ଯୋଗ୍ୟ କୁମାରଙ୍କୁ
ରାଜ୍ୟେ କରି ଅଭିଷିକ୍ତ,
ଜାହ୍ନବୀ ସରଯୂ ସଙ୍ଗମ ସ୍ଥାନରେ
ଯାଇ ହେଲେ ଅବସ୍ଥିତ ।
ସେଠାରେ ମରଣ— ଧର୍ମଶୀଳ ତନୁ
ତୋଟି ବିସର୍ଜନ କରି
ଅମରପୁରକୁ ଚାଲେ କରି ଗଲେ
ଦିବ୍ୟ କଳେବର ଧରି ।



Printed by B.K. Kar, B.A. at the Saraswata Press, Cuttack, 1940

